# ଅମଡ଼ାବାଟ

[ ନାଟକ ]

ବସନ୍ତକୁମାରୀ ପଟ୍ଟନାୟକଙ୍କ
ଉପନ୍ୟାସ 'ଅମଡ଼ାବାଟ'ର ନାଟ୍ୟରୂପ

ନାଟ୍ୟକାର : ଗୋପାଳ ଛୋଟରାୟ

ଗ୍ରନ୍ଥ ମନ୍ଦିର

ପ୍ରକାଶକ : ଅଭିରାମ ମହାପାତ୍ର

ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ :

କ୍ୱାଲିଟି କଂପୋଜର୍ସ, କଟକ

ପଞ୍ଚମ ମୁଦ୍ରଣ : ୧୯୬୧

ଗ୍ରନ୍ଥମନ୍ଦିରଦ୍ୱାରା ପ୍ରଥମବାର ମୁଦ୍ରଣ : ୧୯୮୯



ସୁଲେଖିକା ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକ କରକମଳେଷୁ...

ନାଟ୍ୟକାର

ଅନ୍ନପୂର୍ଣ୍ଣା 'ବ' ଗ୍ରୁପ୍ ଅଭିନୀତ
ପ୍ରଥମ ଅଭିନୟ ରଜନୀ ତା ୨-୧-୧୯୫୯

ପରିଚାଳନା : ସାମୁଏଲ୍ ସାହୁ
ଗୀତ ରଚନା—ନରସିଂହ ମହାପାତ୍ର, ସ୍ୱର ସଂଯୋଜନା—ବାଳକୃଷ୍ଣ ଦାଶ

# ଭୂମିକା

ମାୟା—ଲୀଳା
କାବେରୀ—ମଣିମାଳା
ମଣ୍ଟିବୋଉ—ମାନଦା
ସୀତାବୋଉ—କୃଷ୍ଣା
ଶଶୀବୋଉ—ସ୍ନେହ
ରାଧା—ରୁକ୍ମିଣୀ
ମୋହନ—ବାବି
ପୀତାମ୍ବର—ମଧୁ
ଶଶୀଭୂଷଣ—କେଶବ
ସଦାନନ୍ଦ—ପୂର୍ଣ୍ଣ
ଭିକା—ହର
ପଟୁ—ଭବ
ରଞ୍ଜନ—ବନ
ପହଲ୍—ଚୁନୁ
ରଙ୍କ—ପଦ୍ମ



# ମୁଖବନ୍ଧ

'ଝନ୍‌ଜା'ର ନାଟ୍ୟରୂପ ପ୍ରକାଶ ପାଇଲା ପରେ, ମୋର କେତେଜଣ ବନ୍ଧୁ 'ଅମଡ଼ାବାଟ'ର ନାଟ୍ୟରୂପପାଇଁ ମତେ ଇଙ୍ଗିତ ଦେଇଥିଲେ । 'ଅମଡ଼ାବାଟ' ଉପନ୍ୟାସ ପଢ଼ୁଥାଏଁ । ଏତିକବେଳେ କଟକ ବେତାର-କେନ୍ଦ୍ରର କର୍ତ୍ତୃପକ୍ଷଙ୍କଠୁଁ ନିର୍ଦ୍ଦେଶ ପାଇଲି ଯେ ବେତାର ଉଦ୍ଦେଶ୍ୟରେ ଗୋଟିଏ ଉପନ୍ୟାସର ନାଟ୍ୟରୂପ ଦେବାକୁ ହବ । ...'ଅମଡ଼ାବାଟ'ର ନାୟିକା ମାୟା ମତେ ମନ୍ତ୍ରମୁଗ୍‌ଧ କରି ରଖିଥାଏ, ତା'ର ସ୍ନେହ କବଳରୁ ନିଜକୁ ଆଉ ମୁକ୍ତ କରିପାରିଲିନାହିଁ । ୧୯୫୮ ମସିହା ମାର୍ଚ୍ଚ ମାସରେ 'ଅମଡ଼ାବାଟ'ର ମାତ୍ର ନବେ ମିନିଟର ନାଟ୍ୟରୂପ ମଞ୍ଚରେ ଅଭିନୀତ ହେବା ସଙ୍ଗେ ସଙ୍ଗେ ବେତାରରେ ପ୍ରସାରିତହେଲା । ସେ ଦିନର ଅସାମାନ୍ୟ ସାଫଲ୍ୟ ଯୋଗୁଁ ବେତାର କର୍ତ୍ତୃପକ୍ଷ ଓ ସମାଲୋଚକମାନଙ୍କଠୁଁ ଯେଉଁ ଉତ୍ସାହ ପାଇଲି ତାହାହିଁ ଏ ପୂର୍ଣ୍ଣାଙ୍ଗ ମଞ୍ଚ-ନାଟକ ପ୍ରଣୟନରେ ମୋର ପ୍ରଧାନ ସମ୍ବଳ । ସେଥିପାଇଁ ଏ ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞ ।

'ଅମଡ଼ାବାଟ' ନାଟକକୁ ମଞ୍ଚଶ୍ରୀ-ଶୋଭିତ କରିବାପାଇଁ ଏହାର ପରିଚାଳକ ଶ୍ରୀ ସାମୁଏଲ୍ ସାହୁଙ୍କ ଦାନ ଅପରିସୀମ । ତାଙ୍କୁ ମୁଁ ଅଭିବାଦନ ଜଣାଉଛି । ଆରମ୍ଭରୁ ଏ ନାଟକର ଅଭିନୟ ସହିତ ଯେଉଁ କଳାକାରମାନେ ସଂପୃକ୍ତ, ସେମାନଙ୍କୁ ମୁଁ ମୋର ଅନ୍ତରର ଧନ୍ୟବାଦ ଜ୍ଞାପନ କରୁଛି ।

କାଳୀଗଳି, କଟକ-୨
ତା ୨୧-୨-୧୯୫୯ } ଗୋପାଳ ଛୋଟରାୟ

# ଅଭିମତ

ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକଙ୍କ ଉପନ୍ୟାସ 'ଅମଡ଼ାବାଟ'ର ନାଟ୍ୟରୂପ, ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟଙ୍କର ଆଉ ଏକ ସଫଳ ଉଦ୍ୟମ । "ଝନ୍‌ଜା"ର ସଫଳତା ହୁଏତ ତାଙ୍କୁ ବହୁ ଉପନ୍ୟାସର ନାଟ୍ୟରୂପ ଦେବାକୁ ଅନୁପ୍ରାଣିତ କରିଛି । ସଂଳାପ ରଚନା ଓ ନାଟକୀୟ ଦୃଶ୍ୟର ଅବତାରଣା କ୍ଷେତ୍ରରେ ପୁଣି ଥରେ ଶ୍ରୀ ଛୋଟରାୟ ପ୍ରତିପାଦିତ କରିଛନ୍ତି ଯେ, ଓଡ଼ିଆ ନାଟ୍ୟପରିବେଷଣ କ୍ଷେତ୍ରରେ ସେ ଅପ୍ରତିଦ୍ୱନ୍ଦ୍ୱୀ । ଏ ନାଟକର ଆଉ ଏକ ବୈଶିଷ୍ଟ୍ୟ ରହିଛି । ତାହା ହେଉଛି, ଗତାନୁଗତିକ ପନ୍ଥାରେ ହାସ୍ୟରସ ସୃଷ୍ଟି କରିବାପାଇଁ ଏଥିରେ କୌଣସି ସ୍ୱତନ୍ତ୍ର ଚରିତ୍ରର ଅବତାରଣା କରାଯାଇନାହିଁ । ମୂଳରୁ ଶେଷ ପର୍ଯ୍ୟନ୍ତ ମାଷ୍ଟ୍ରାଠାରୁ ଆରମ୍ଭ କରି ଶଶୀବାବୁଙ୍କ ମୋହରିର ଯାଏଁ ପ୍ରତ୍ୟେକ ଚରିତ୍ର ନିଜର ବୈଶିଷ୍ଟ୍ୟ ଯୋଗୁଁ ଦର୍ଶକଙ୍କୁ ଅଭିଭୂତ କରିଛି—ଦର୍ଶକ ହସି ହସି ଲୋଟି ଯାଇଚ; କିନ୍ତୁ ତାରି ଭିତରେ ରହିଛି ନାଟକୀୟ ଘଟଣାର ବାସ୍ତବତା ।

ଚନ୍ଦ୍ରଚନ୍ଦ୍ର

୫–୧–୧୯୫୯ ରବିବାର ପ୍ରଜାତନ୍ତ୍ର

ଗତକାଲିଠାରୁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ କର୍ତ୍ତୃକ ନୂତନ ସାମାଜିକ ନାଟକ "ଅମଡ଼ାବାଟ"ର ଅଭିନୟ ଆରମ୍ଭ ହୋଇଛି । ସିଦ୍ଧହସ୍ତା ଔପନ୍ୟାସିକା ବସନ୍ତକୁମାରୀ ପଟ୍ଟନାୟକଙ୍କ ଉପନ୍ୟାସକୁ କୁଶଳୀ ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟ ନାଟ୍ୟରୂପ ଦେଇଛନ୍ତି । ନାଟକର ସଂଳାପଗୁଡ଼ିକ ଅତି ବଳିଷ୍ଠ ଓ ପ୍ରଭାବଶାଳୀ ହୋଇପାରିଛି । ନିପୁଣ ଅଭିନେତା ଓ ନିର୍ଦ୍ଦେଶକ ଶ୍ରୀ ସାମୁଏଲ୍ ସାହୁ (ବାବି)ଙ୍କ ନିର୍ଦ୍ଦେଶନା ମଧ୍ୟ ବେଶ୍ ସଫଳ ଓ କୌଶଳ-ପୂର୍ଣ୍ଣ ହୋଇପାରିଛି ।

୪–୧–୫୯ ଗଣତନ୍ତ୍ର

ଅନ୍ନପୂର୍ଣ୍ଣା ଥିଏଟର 'ବି' ଗ୍ରୁପ୍‌ରେ ମୋର 'ଅମଡ଼ାବାଟ' ଉପନ୍ୟାସର ନାଟକ ରୂପାନ୍ତର ଦେଖି ଆଶ୍ଚର୍ଯ୍ୟ ହେଲି । ସୁପ୍ରତିଷ୍ଠିତ ନାଟ୍ୟକାର ଶ୍ରୀଯୁକ୍ତ ଗୋପାଲ ଛୋଟରାୟ ଏହି କଥାବସ୍ତୁକୁ ମଞ୍ଚୋପଯୋଗୀ କରି ଜୀବନ୍ତ କରିଛନ୍ତି । ଅନ୍ନପୂର୍ଣ୍ଣାର ଦକ୍ଷ ଅଭିନେତା ଓ ଅଭିନେତ୍ରୀମାନଙ୍କର ପ୍ରାଣସ୍ପର୍ଶୀ କଲାକୁଶଲତା ମୋତେ ଆଶ୍ଚର୍ଯ୍ୟ କରିଛି ।

ବସନ୍ତ କୁମାରୀ ପଟ୍ଟନାୟକ
୧୭-୯-୫୯

ମୁଁ ଅମଡ଼ାବାଟ ଅଭିନୟ ଦେଖି ମୁଗ୍ଧ ହେଲି । ଆଧୁନିକ ଓଡ଼ିଆ ନାଟକ ରାଜ୍ୟରେ ଏହା ମଥାମଣି ହୋଇଛି । ଏଥିପାଇଁ ଉପନ୍ୟାସ ଲେଖିକା କଲ୍ୟାଣୀୟା ବସନ୍ତକୁମାରୀ ପଟ୍ଟନାୟକ ଓ ନାଟ୍ୟକାର କଲ୍ୟାଣୀୟ ଗୋପାଲ ଛୋଟରାୟ ଉଭୟ ଧନ୍ୟବାଦାର୍ହ । ନଟନଟୀ ନାଟକଟିକୁ ଯେପରି ଜୀବନ୍ତ କରିଛନ୍ତି ତାହା ମୋ ସମ୍ମୁଖରେ କଲିକତାର ଶ୍ରେଷ୍ଠ ରଙ୍ଗମଞ୍ଚଗୁଡ଼ିକର ଅଭିନୟ ନିପୁଣତାକୁ ହରାଇଦେଇଛି । ଏତେଦିନ ପରେ ଓଡ଼ିଆ ନାଟକ ଅଭିନୟରେ ଓ ତାହାର ଅଭୂତପୂର୍ବ ନିପୁଣତା ମତେ ମୁଗ୍ଧ କଲି । Hearty congratulations !

ଶରତ୍‌ଚନ୍ଦ୍ର ମୁଖାର୍ଜୀ
ପରିଚାଳକ, ସବୁଜ ସାହିତ୍ୟ ସମିତି

ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ଦ୍ୱାରା ଅଭିନୀତ 'ଅମଡ଼ାବାଟ' ଦେଖିବାର ସୁଯୋଗ ପାଇ ବିଶେଷ ଆନନ୍ଦିତ ହେଲି । ନାଟ୍ୟକାର ଶ୍ରୀଯୁକ୍ତ ଗୋପାଳବାବୁ ଉପନ୍ୟାସଟିକୁ ଯେଉଁଭଳି ଭାବରେ ନାଟ୍ୟରୂପ ଦେଇଛନ୍ତି ତାହା ବିଶେଷ ପ୍ରଶଂସାର୍ହ । ଅଭିନେତା ଓ ଅଭିନେତ୍ରୀବର୍ଗ ଏହାକୁ ରୂପ ଦେବାରେ ଯେଉଁଭଳି ନୈପୁଣ୍ୟ ପ୍ରଦର୍ଶନ କରିଛନ୍ତି, ସେଥିରେ ମୁଁ ଅଭିଭୂତ ହୋଇପଡ଼ିଛି ।

ଶ୍ରୀହର୍ଷ ମିଶ୍ର
ସମ୍ପାଦକ, 'ସମାଜ', କଟକ
୧୭-୧-୫୯

ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ପକ୍ଷରୁ ଅଭିନୀତ 'ଅମଡ଼ାବାଟ' ଦେଖିଲି । ଏହା ଆଧୁନିକ ଓଡ଼ିଆ ସାହିତ୍ୟର ଏକ ପ୍ରଖ୍ୟାତ ଉପନ୍ୟାସ । ···ଉପନ୍ୟାସଟିକୁ ନାଟକର ଆକାର ଦେଇଛନ୍ତି ଶ୍ରୀ ଗୋପାଳ ଛୋଟରାୟ । ଗୀତ, ନାଚ ନ ଥିବା ଗୋଟିଏ ନାଟକ ସରସ ଓ ଉପଭୋଗ୍ୟ ହୋଇପାରିଛି ଶ୍ରୀ ଛୋଟରାୟଙ୍କ ଦକ୍ଷ ହସ୍ତରେ । ···ନାଟକର ନିର୍ଦ୍ଦେଶକ 'ବାବି' ଓ ଅଭିନେତା ଅଭିନେତ୍ରୀଗଣ ଖୁବ୍ ଭଲଭାବରେ ଏହି ନାଟକଟିକୁ ଉପସ୍ଥାପିତ କରିପାରିଥିବାରୁ ସେମାନଙ୍କୁ ଅଭିବାଦନ ଜଣାଉଛି ।

ଜାନକୀବଲ୍ଲଭ ପଟ୍ଟନାୟକ
ସମ୍ପାଦକ, 'ପ୍ରଜାତନ୍ତ୍ର'
୨୯-୧-୫୯

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ପୀତାମ୍ବର ବାବୁଙ୍କ ଘରର ଏକ କୋଠରୀ । ଦୁଇ ପାଖରେ ଦରଜା । ଏକ କୋଠରୀ ସଂଲଗ୍ନ ବାରଣ୍ଡାରୁ ଉପରକୁ ଯିବା ପାଇଁ ସିଡ଼ି ଦେଖାଯାଉଛି । କୋଠରୀ ଭିତରେ ଜଣେ ମଧ୍ୟବିତ୍ତ ଗୃହସ୍ଥଙ୍କୁ ଖାପ୍ ଖାଇଲା ଭଳି ଚୌକି, ଟେବୁଲ ଆଦି ଉପକରଣ । ଦୃଶ୍ୟ ଆରମ୍ଭରେ ଦେଖାଗଲା— ମାୟା, ପୀତାମ୍ବରବାବୁଙ୍କର ସତର ଅଠର ବର୍ଷର ଝିଅ ଚୌକି ଉପରେ ବସି ଖଣ୍ଡେ କବିତା ବହି ଧରି ଉଚ୍ଚସ୍ୱରରେ ପଢ଼ୁଛି ଓ ପଢ଼ିଲାବେଳେ ଆଉ କେହି ତା' ପଢ଼ା ପ୍ରତି ଆକୃଷ୍ଟ ହେଉଛନ୍ତି କି ନା ଅତି ସନ୍ତର୍ପଣରେ ଲକ୍ଷ୍ୟ କରୁଛି ]

ମାୟା— ବୋଲେ ସୁଗ୍ରୀବେ ଶ୍ରମ କ୍ଳେଶ ଶୋଷା,
ବେନି ଜନେ ପଡ଼ିଛୁ ଏକ ଦଶା,
ବିଖ୍ୟାତ ବଂଶେ ଜନ୍ମ ଆମ୍ଭର,
ବିଧିରେ ତ ତୁମ୍ଭେ ତାଙ୍କ କୁମର;
ବପୁ ଅଯୋଧ୍ୟା କିଷ୍କିନ୍ଧ୍ୟା ରାଜନ,
ବିଭୂତିରେ ବନେ ହେଲା ସଦନ,
ବାମା ବିଚ୍ଛେଦ ପର ଧରଷଣେ,
ବନ୍ୟ ଧନ ଫଳମୂଳ ଭକ୍ଷଣେ;
ବନ୍ଧୁ ଅନୁଜ ମନ୍ତ୍ରୀ ପ୍ରବୋଧନେ,
ବୋଧ ହୋଇ ରହିଥାଇ ଜୀବନେ;
ବଳବନ୍ତ ହେଲେ ଯଥା କେଶରୀ,
ବଧେ ଗଜାଦି ସରଭକୁ ଡରି;

( ପଢ଼ା ଶେଷ ନ ହେଉଣୁ ଆସିଲେ ମାସ୍କାବୋଉ । ସେ ମଞ୍ଝିବୋଉ ନାମରେ ପରିଚିତା )

ମଞ୍ଝିବୋଉ—ଆଲୋ, ସ୍କେ କ ଢଙ୍ଗରେ ଗ୍ରୁଦ ପଢ଼ାହଉଚ କଲେ ମାସ୍କା ?

ମାସ୍କା—ଏଁ !

ମଞ୍ଝିବୋଉ—ପଢ଼ୁଚୁ ଯଦି ଟିକେ ସୁର୍ ଧରି ପଢ଼ୁନୁ !

ମାସ୍କା—ମୁଁ ଆଉ କ'ଣ ମିଛରେ କହେ ଯେ, ଏ ଘରେ ତମେମାନେ ମତେ କେହି ପଢ଼େଇ ଦବନି । ଭୋକରେ ପେଟ ଆଉଣ୍ଡି ହୋଇଗଲେ ବି ପୂର୍ଝାଣ୍ଟି ଠିକ୍ ସମୟରେ ମୁଠାଏ ଖାଇବାକୁ ଦବନି । ଗୁଜର ମହାପ୍ରଭୁ ଅଛନ୍ତି ଯେ, ପାଣି ଗିଲାସେ ମାଗିଲେ ହାତରେ ଥଳିଟା ଧରି ଆଡ଼ା ଦେଖେଇ ବଜାରକୁ ବାହାରିଯିବେ । ବାପା ତ ଅଫିସରୁ ଫେରି ସେଇ ପାଞ୍ଚଟା ବେଳୁ ଗ୍ରୁତ ଉପରକୁ ଯାଇଚନ୍ତି ଯେ ତାଙ୍କର ପତ୍ତି ମିଳୁ ନାହିଁ । ଭାଇ ସାହେବ୍ ତ ଡାକ୍ତର ଖାନାରୁ ଫେରି ନାହାନ୍ତି !

ମଞ୍ଝିବୋଉ—ଆଲୋ କ'ଣ ଏଗୁଡ଼ା ଗପିଯାଉଚୁ ବା ! ମୁଁ କହିଲି କ'ଣ ତୁ କହୁଚୁ କଣ ?

ମାସ୍କା—ଆଗୁ ବୋଉ, ମୁଁ କ'ଣ ପାଲଗାଆଣ ହେଇଚ ଯେ ସୁର୍ ଧରି ଗ୍ରୁଦ ବୋଲିବ । ମୋର ଆଉ କିଛୁ ପଢ଼ାପଢ଼ି ନାହିଁ ?

ମଞ୍ଝିବୋଉ—ତୁ ପଢ଼ା କରୁଥିଲାବେଳେ ମୁଁ ଭଲ ତୋ' ପାଖ ମାଡ଼େ ? ଗ୍ରୁଦଟା ବୋଲୁଥିଲୁ ବୋଲି ସୁର୍ ଧରି ବୋଲିବାକୁ କହିଲି ।

ମାସ୍କା—ବୁଝିଲୁ ବୋଉ ! ମତେ ପରୀକ୍ଷାରେ ଫେଲ୍ କରେଇଦେବା ପାଇଁ ଏ ଘରେ ଯେଉଁ ବିପକ୍ଷ ଦଳ ଗଢ଼ା ହେଇଚ, ତୁ ସେଇ ଦଳରୁ ଜଣେ । ତୋ ଜିଅ ଆଉ କାହାଭଳି ହେଇନାହିଁ ଯେ ପଢ଼ାବେଳେ ବାହାର ବନ୍ଧ ପଢ଼ିବ !

ମଞ୍ଝିବୋଉ—ଏଇଟା ତେବେ ତୋ' ପଢ଼ାବନ୍ଧ ?

ମାସ୍କା—ହଁ, ହଁ ପଢ଼ାବନ୍ଧ । ସାହିତ୍ୟ । ଏଇ ଶୁଣ୍...(ପଢ଼ିଲା)

ବେଗେ ତୋଳିଲେ କଳ ସେ ଯେମନ୍ତ
ବହ୍ନାସ୍ତ୍ରସେ ଫିଙ୍ଗି ଦେଲେ ତେମନ୍ତ
ଵିବସ୍ତ୍ରାନ କରଣେ ଶୁଷ୍କ ଭାବ ।
କହେ କାଳୀ ଏବେ ଶୁଣ ରାଘବ ।

ମହାବୋଉ—ଥାଉ ଲୋ ମା ଥାଉ । ମତେ ସେଥିରୁ କଣ ମିଳିବ ?

ମାଷ୍ଟ୍ରା—ତତେ ସିନା କିଛି ମିଳିବ ନାହିଁ, ହେଲେ ତୋ ଝିଅ ଏଇ ମାଷ୍ଟ୍ରା—ଏଇ ଦାନ୍ତଭଙ୍ଗା ପାଠକୁ ପଢ଼ିବ, ବୁଝିବ, ପରୀକ୍ଷା ଦେଇ ପାଶ୍ କରିବ ।

ମହାବୋଉ—ମୁଠା ମୁଠା ଟଙ୍କା ଖରଚ କରି କଲେଜରେ ପାଠ ପଢ଼ୁଚୁ ଆଉ କ'ଣ ପାଶ୍ କରନ୍ତୁ ନାହିଁ କି ?

ମାଷ୍ଟ୍ରା— ମୁଁ ତତେ କେତେଥର କହୁଚି ବୋଉ, ଖାଲି ବହି ଘୋଷି ପାଠ ପଢ଼ିଲେ ପାଶ୍ ହୁଏନି । ବାପା ଯାଇ ଗୁରୁ ଉପରେ; ଈଶ୍ୱରଙ୍କ ଦର୍ଶନ ନାହିଁ···

ମହାବୋଉ—ଆଲୋ ତୁ ତ ତୋର ପାଠ ପଢ଼ିବୁ, ବାପା-ଭାଇ ଆସି କ'ଣ ତତେ ଜଗି ବସିବେ ?

ମାଷ୍ଟ୍ରା—ପୁଣି ସେଇ କଥା କହିଲୁ ?

ମହାବୋଉ—ନାହିଁ ଲୋ ଝିଅ, ମୁଁ ତତେ କିଛି କହୁନି ! ମୁଁ ଯାଏଁ—ତେଣେ ମୋର ଢୁନଆଁ ଘାକର କାମ ପଡ଼ିଚି । (ଯାଉ ଯାଉ) ପଢ଼ିବାର ମନ ଥିଲି ତ, ତୋ ପଢ଼ାଘରେ ନ ରହି ଏଠି ଆସି ଏ ନବରଙ୍ଗ ହଉଚୁ କାହିଁକି ?

ମାଷ୍ଟ୍ରା—କ'ଣ କହିଲୁ ? ମୋ ପଢ଼ାଘରେ ଯାଇ ପଢ଼ିବି ତ ? ଆଚ୍ଛା ବେଶ୍ । ଯାଉଚି, ହେଲେ ମୁଁ ତତେ କହିଦଉଚି ବୋଉ, ରାତି ବାରଟା ଆଗରୁ ମତେ ଯେମିତି କେହି ଡିଷ୍ଟର୍ବ ନ କରନ୍ତି । ଖାଇବାକୁ ବି ନୁହେଁ ।

ମଣ୍ଟିବୋଉ—(ହସି) ବାରଟା ଯାଏ କଥା ଶିବନାହିଁ ଲେ ଝିଅ—ସାତ ଆଠ ନ ବାଜୁଣୁ ତ ଝରକା କବାଟ ବନ୍ଦ କରି ନଘୋଡ଼ ନଦରେ ଶୋଇଥିବୁ !

ମାଷ୍ଟା—କ'ଣ ହେଲ ? ମୁଁ ନଦରେ ଶୋଇବାକୁ ଝରକା କବାଟ ବନ୍ଦ କରେ ? ତୁ ଏତେବଡ଼ ଡାହାମିଛ କଥା କହିପାରୁଚୁ ବୋଉ ? ଏମିତକା ବାହାଦୂର ପୂଝାରୀ ରଖିଚୁ ଯେ ଏକା ଥରକେ ଛନ ଛନଟା କୋଇଲାଚୁଲ୍ଲୀ ଲଗେଇ ଦବ । ସେଥିରୁ ପର୍ବତ ପ୍ରମାଣେ ଧୂଆଁ ବାହାରି ଏକାବେଳକେ ଡାଇରେକ୍ଟ ମୋ ପଢ଼ାଘର ବାଟେ ପାଶ୍ କରିବ । ଝରକା କବାଟ ବନ୍ଦ ନ କଲେ ଧୂଆଁରେ ମୋ ଆଖି ନାକ ରୁନ୍ଧ ହୋଇ ଯୋଉ ଅବସ୍ଥା ମୁଁ ଭୋଗେ ନା—ତା ମୁଁ ଜାଣେ । ଆଉ ତୁ କହୁଚୁ କ'ଣ ନା···

ମଣ୍ଟିବୋଉ—ଆଲେ ନାହିଁ ଲେ, ମୁଁ ତତେ କିଛି କହୁନ । ମୁଁ ମୋର ଯାଏ ।

ମାଷ୍ଟା—ହଁ, ତୁ ଯା—ତୁ ତ ମୋ ପଢ଼ାକଥା ବୁଝୁନୁ—ଶିଏ ବୁଝୁଚନ୍ତି ସିଏ ଆସନ୍ତୁ । ତାଙ୍କ ସାଙ୍ଗରେ ମୋର କଥାବାର୍ତ୍ତା । (ମଣ୍ଟିବୋଉ ଚାଲି-ଗଲେ—ମାଷ୍ଟା ପୁଣି ପଢ଼ିଲା)—"ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ ।" ( ପଢ଼ା ବନ୍ଦ କରି) କୁଆଡ଼େ ଗଲେ ଏ ପଞ୍ଝାଟା ଏତେବେଳଯାଏ ! ସବୁଗୁଡ଼ାକ ନପଟ ଗଧ, ବୋକା—ହୁଣ୍ଡା (ପୁଣି ବହି ଖୋଲି ବସିଲା । ଅନ୍ୟ ଦଗରୁ ଲୁଚଛପି ଆସିଲା ପରି ଆସିଲା "ପରୁ", ମାଷ୍ଟାର ୯।୧୦ ବର୍ଷର ଗୋଟିଏ ଭାଇ )

ପରୁ— ଅପା ।

ମାଷ୍ଟା—କରେ ପରୁ, ତୁ କ'ଣ ଆଣିଚୁ ?

ପରୁ—ତେନ୍ତୁଳି ଅଚ୍ଚାର ।

ମାଷ୍ଟା—କାହିଁ ?

ପଲ୍ଟୁ—ଡାଳ ପକେଟ୍‌ରେ (ଗ୍ରୁଡରେ ଦୁଇ ହାତକୁ ଛନ୍ଦି ଠିଆ ହେଲା)

ମାଷ୍ଟ୍ରା—ହେ...

ପଲ୍ଟୁ—ବୋଉ ସେ ବାରଣ୍ଡାରେ ଏଣିକି ଅନେଇ ଠିଆ ହୋଇଛି । ମୁଁ ଦେଲେ ଜାଣି ପାରିବ । ତୁ ଚୁପ୍ କରି କାଢ଼ି ନେଇ ଯା-( ମାଷ୍ଟ୍ରା ପକେଟ୍‌ରେ ହାତ ଭର୍ତ୍ତି କଲା ) ଉଁ ହୁଁ—ସେ ପକେଟ୍‌ରେ ନୁହେଁ, ଏ ପକେଟ୍‌ରେ ( ମାଷ୍ଟ୍ରା ଅଗ୍ଗର ପୁଡ଼ିଆଟା ପକେଟ୍‌ରୁ ଆଣିଲା । )

ମାଷ୍ଟ୍ରା—ସେ ଦଣ୍ଟା କୁଆଡ଼େ ଗଲେ ?

ପଲ୍ଟୁ—ଏଇ ରଞ୍ଜନ ଆସିଲାଣି ! (ରଞ୍ଜନ ଆସିଲା । ବୟସରେ ପଲ୍ଟୁଠୁଁ ବର୍ଷେ ଅଧେ ଜ୍ୟେଷ୍ଠ )

ମାଷ୍ଟ୍ରା— କରେ ଚପ୍ ଆଣିଚୁ କି ?

ରଞ୍ଜନ – ହଁ । ଦେଖ୍ ତ ପଲ୍ଟୁ ଭାଇ ! ବୋଉ ଗଲାଣି ନା ସେଠି ଠିଆ ହୋଇଛି ।

ପଲ୍ଟୁ ଗଲାଣି ।

ରଞ୍ଜନ—ଏଇ ନେ ଅପା...

ମାଷ୍ଟ୍ରା—କଦଳୀ ଭଣ୍ଡା ଚପ୍ କି ?

ରଞ୍ଜନ—ହଁ ।

ମାଷ୍ଟ୍ରା—କରେ କ'ଣ ମୋଟେ ଗୋଟାଏ ଚପ୍ ଆଣିଚୁ ?

ରଞ୍ଜନ—ଆଉ ଭଜା ହୋଇନ ।

ମାଷ୍ଟ୍ରା—ଏଇ ଗୋଟିଏ ଚପ୍‌କୁ ଘଣ୍ଟାଏ ନେଲୁଣି । କ'ଣ କଦଳୀ ଗଛ ପୋତି, ତା' ଭଣ୍ଡା ବାହାରିବା ଯାଏ ଜଗିକି ବସିଥିଲୁ ? ଗଧ— ଅଳସୁଆ !

ରଞ୍ଜନ—ପୂଝାରୀ ତ "ଏଇ ଦଉଚି", "ଏଇ ଦଉଚି" କହି ଡେରି କରିଦେଲା । ମୁଁ କ'ଣ କରିବ ?

ମାୟା—ପୁଷ୍ପାଶ୍ରୀକୁ ମୋ ନାଁ କହିନୁ ତ ?

ରଞ୍ଜନ—ନା, ମୋ ନାଁ କହି ଆଣିଲି ।

ମାୟା—ଆସ୍ଥର ଆଣିଲାବେଳେ ବୋଉ ଦେଖିନାହିଁ ତ ? ହଇରେ ପତ୍ରୁ ?

ପତ୍ରୁ—ନାହିଁ ଅପା । ବୋଉ ଏ ଘରକୁ ଆସିଥିଲାବେଳେ ଝଟ୍‌କର ଆଣି ପାକଟିରେ ଲୁଚେଇ ଦେଲି ।

ରଞ୍ଜନ—ମୁଁ ବି ଠିକ୍ ସେଇଆ କରିଚି ଅପା । ବୋଉ ଏ ଘରକୁ ଆସିଲା ବେଳେ ପୁଷ୍ପାଶ୍ରୀଠୁ ଚପ୍ ଆଣି ଏଇ ଦୁଆର ବାଟେ ଚମ୍ପଟ୍ । ବୋଉ କିଛୁ ଜାଣିପାରିନି ।

ମାୟା—ଦେଖିଲ ତ ମୋ ବୁଦ୍ଧି ! ଉପରେ ରହିଲେ ବାପା ଜାଣେ ଦେଖିବେ ବୋଲି ପଢ଼ା ନାଁରେ ଏଠିକି ଚାଲିଆସିଲି । ଆଉ ଏଠି ବସି ଏଡ଼େ ପାଟିରେ ଗୀତ ପଢ଼ିଲି ଯେ ବୋଉ ଏ ଘରକୁ ଚାଲି ଆସିଲା !···ପହିଲଟା ପୁଣି କୁଆଡ଼େ ଗଲା ? ବୋକା-ନପାରିଲାରଟାଏ ବୋଲି ଖାଲି ପାଣି ଗିଲାସେ ଆଣିବାକୁ କହିଥିଲି ଯେ--ଏତେ ବେଳଯାଏ ତାର ଦେଖା ନାହିଁ ।

ରଞ୍ଜନ—ଅପା !

ମାୟା—କ'ଣ ?

ରଞ୍ଜନ—ତୁ ଯାହା କହିଥିଲୁ ?

ମାୟା—କ'ଣ କହିଥିଲି ?

ରଞ୍ଜନ—ତୋ' କାମ କରିଦେଲେ ଆମକୁ ଲଜେନ୍‌ସ ଦବୁ ବୋଲି !

ମାୟା—ଦେବ ରେ ବାବୁ, ଦେବ । କହିଚି ଯେତେବେଳେ ଦେବ ! ଭାଇ ଆସନ୍ତୁ ।

ରଞ୍ଜନ—ଠକବୁ ନାହିଁ ତ ?

ମାୟା—ମୋ ବାହାଦୂର ଭାଇ, ମୁଁ ତମକୁ ମୋଟେ ଠକିବ ନାହିଁ । ଭାଇ ଆଜି ନିଶ୍ଚେ ଲଜେନ୍‌ସ ଆଣିବେ; ମୁଁ ତମକୁ ନିଶ୍ଚେ ଦେବ । ଏଇନେ ଯାଅ ।

ରଞ୍ଜନ—ଏଇ ଅପା, ଭାଇ ଆସିଲେଣି !

ମାୟା—ଏଁ, ଆସିଲେଣି ? ଆରେ ରଖ ରଖ, ଆସ୍ତୁର, ଚପ୍ ଡ୍ରୁ ଭିତରେ ଲୁଚେଇ ରଖ ।

(ଲୁଚେଇ ଦେଲା) ବହିଟା କାହିଁ ? ହୁଁ —(ପଢ଼ିଲା)

ଜଗତେ କେବଳ, ଜନେ ହସିବେ ଏହି ତନ୍ତୁଁ ଫଳ,
ନରଜୀବ ରସେ ଦେଇ ମାନସ,
ବରଜ ବରଷେ ଅମେଧ ଗ୍ରାସ,
ଦେବେ ମନ୍ଦାକିନୀ ରଜ ଲଗାଇ,
ଗ୍ରାମ୍ୟ ଶୃଙ୍ଖଳ ନ ହୋଇବ ଗାଇ;
ଜଗତେ କେବଳ .....

ମୋହନ—(ପ୍ରବେଶ କରି) ଜନେ ହସିବେ ଏହି ତନ୍ତୁଁ ଫଳ ।

ମାୟା—ମାନେ ?

ମୋହନ—ମାନେ ଏ ବର୍ଷ ରୁ ଆଇ: ଏ: ପରୀକ୍ଷା ଦବୁ ।

ମାୟା—ହୁଁ, ଦେବ ତ । ସେଇଥି ପାଇଁ ଦିନ ନାହିଁ ରାତି ନାହିଁ ହାଡ଼ଭଙ୍ଗା ପରିଶ୍ରମ କରୁଚ--

ମୋହନ—ସେଇ କଥା ମାୟା ! ଖୁବ୍ ପରିଶ୍ରମ କରି ପଢ଼ାପଢ଼ି କର, ନ ହେଲେ ଏଇ ରୁ ଯାହା ପଢ଼ୁଥିଲୁ ··ଜଗତେ କେବଳ···

ମାୟା—ଜଗତ କଥା ଥାଉ ! ଆଗେ ମୋ କଥା ବୁଝିବଟି ଭାଇ !

ମୋହନ—କ'ଣ ତୋ କଥା ?

ମାୟା—ଚାନ୍ଦା, ସରସ୍ୱତୀ ପୂଜା ଚାନ୍ଦା !

ମୋହନ—କେତେ ଟଙ୍କା ?

ମାୟା—ପାଞ୍ଚ ଟଙ୍କା ।

ମୋହନ—କେତେ ?

ମାସ୍ତ୍ରା—ପାଞ୍ଚ ଟଙ୍କା ପଗ୍ର ! କ୍ଲାସରେ ମତେ କହିଲେ—ତୋ ବାପା ବଡ଼-ଲୋକ, ଭାଇ ଡାକ୍ତର, ପାଞ୍ଚ ଟଙ୍କାରୁ କମ୍‌ଗ୍ର୍ଦା ତୋଠୁଁ ନଆଯିବ-ନାହିଁ ।···

ମୋହନ--ସେମାନେ କହିବା ଆଗରୁ ତୁ ତ ଆଗ ବଢ଼ି ଆଉ ଅଧିକା ଦ' ଟଙ୍କା ଗ୍ର୍ଦା ଦେବାକୁ କହିଥିବୁ !

ମାସ୍ତ୍ରା—ବିଦ୍ୟାଗ୍ରଣ ଭାଇ । ସେମାନେ ମତେ ଆଗ କହିଲେ । ମୁଁ କିଛୁ କହିନି !

ମୋହନ—ତୁ ତାହେଲେ ଏଇନେ କ'ଣ କହୁଚୁ ଯେ !

ମାସ୍ତ୍ରା—କିଛୁ ନାହିଁ--ଗ୍ର୍ଦା ଟଙ୍କାଟା ଦେଇଦିଅ ।

ମୋହନ—ହୁଁ, କରେ ପରୁ, ରଞ୍ଜନ ! ତମର କ'ଣ କିଛୁ ପଢ଼ାପଢ଼ି ନାହିଁ ? ଏଠି ଆସି କ'ଣ କରୁଚ ?

ପରୁ—ନାହିଁ ଭାଇ, ଆମେ ଅପା ପାଖକୁ ଆସିଥିଲୁ !

ମୋହନ—କାହିଁକି ?

ମାସ୍ତ୍ରା—ପଢ଼ା--ପଢ଼ା ବୁଝିବାକୁ ।

ରଞ୍ଜନ—ଭାଇ, ଆମ ଗ୍ର୍ଦା ?

ମୋହନ—ତମର କେତେ ?

ମାସ୍ତ୍ରା – ତାଙ୍କ ଗ୍ର୍ଦା କଥା ପରେ ବୁଝିବ ଭାଇ । ଆଗ ମୋ ଗ୍ର୍ଦାଟା ଦେଇ-ଦିଅନ୍ତି ! ଗ୍ର୍ଦା ଟଙ୍କାଟା ହାତକୁ ଆସିନାହିଁ ବୋଲି ପଢ଼ାପଢ଼ିରେ ପୂରାପୂରି ମନ ଦେଇ ପାରୁନି ।

ମୋହନ—ପାଞ୍ଚ ଟଙ୍କା ଖୁବ୍ ବେଶୀ ହେଇଯାଉଚି ମାସ୍ତ୍ରା ।

ମାସ୍ତ୍ରା—ହେଇଛି ଭାଇ, ବାପା ଏଇନେ ଘରକଥା କିଛୁ ବୁଝୁନାହାନ୍ତି । ସବୁ ଭାର ତମ ଉପରେ । ତମେ ଯଦି ଏମିତି ଚପା ଢଙ୍ଗ ଧରିବ···

ମୋହନ---ଆଚ୍ଛା-ଆଚ୍ଛା, ତୋ' କଥା ରହିଲା···ଏଇ ନେ ପାଞ୍ଚ ଟଙ୍କା !

ପଦ୍ମଲ—( କାନ୍ଦୁ କାନ୍ଦୁ ଆସିଲା ) ଚପ୍ ଖାଇଲୁଣି ଅପା ? ମୁଁ ପାଣି ଆଣି-ଲିଣି । ( ପଦ୍ମଲ ହାତରେ ଭଗ୍ନ ଗିଲାସେ ପାଣି, ବସ୍ତ୍ରସରେ ରଞ୍ଜନଠୁ ଗ୍ରେଟ )

ମାସ୍ଯା—ବଦମାସ୍ ଟୋକା, ତେଣେ ଚପ୍ କଟଲେଟ୍ ଖାଇ ଏଠିକି ଗ୍ଲିଲ-ଆସିଲା ପାଣି ପିଇବାକୁ ! ଏ ଜାଗାଟା ଶସ୍ତା ପଡ଼ିଚ । ଭାଇ, ଏଗୁଡ଼ାକ ପଗ୍ର କୋଉଠି ହେଲେ ମତେ ପଢ଼େଇ ଦେବେନି ! ଯା—ବାହାର ଯା ଏଠୁ !

ପଦ୍ମଲ—ସେତେବେଳେ ତୁ ମତେ କହିଲୁ···

ମାସ୍ଯା—କ'ଣ କହିଲି ··? କେତେବେଳେ ଯାଇ କହିଥିଲି ବୋଲି ଏଇନେ ତୁ ପାଣିଗିଲାସ ଧରି ଡଲି ଡଲି ଆସୁଚୁ ? ଯା—ନେଇଯା ସେ ପାଣି ! (ମୋହନ ମାସ୍ଯାର ଗ୍ଲୁରୁଷ ବୁଝି ପାରିଲା)

ମୋହନ—ହୁଁ—ଆଣିଲିଣିତ, ପାଣି ଗିଲାସଟା ନେଇଯିବ କାହିଁକି ? (ପଦ୍ମଲକୁ) ଆରେ ପଦ୍ମଲ, ରଖିଦେ ଏଠି । (ପଦ୍ମଲ ଗ୍ଲାସ ରଖି ଠିଆ-ହେଲା) ଆରେ ପଦୁ, ରଞ୍ଜନ ! ତମ ଦୁହିଁଙ୍କର ତ ଏକା କ୍ଲାସ । ଗ୍ନନ୍ଦା କେତେ ?

ପଦ୍ମଲ—କ'ଣ ସରସ୍ୱତୀ ପୂଜା ଗ୍ନନ୍ଦା ଦଉଚ କି ଭାଇ ? ମତେ ଦିଅ ··

ମୋହନ—ତୁ ତ ଏଇନେ ସ୍କୁଲରେ ପଢ଼ୁନୁ । ତୋର ଗ୍ନନ୍ଦା କ'ଣ ହବ ?

ପଦ୍ମଲ—ବା'ରେ ! ମୁଁ ଘରେ ପୂଜା କରିବିନି ?

ମୋହନ—ଓଃ—ଘରେ ପୂଜା କରିବୁ ? ଆଚ୍ଛା, ତୋ'ର କେତେହେଲେ ଚଳିବ ?

ପଦ୍ମଲ—ଟଙ୍କାଏ ।

ମୋହନ—ଆଚ୍ଛା, ନେ ଟଙ୍କାଏ ! (ଦେଲା) ହଁ, ତମ ଦୁହିଁଙ୍କର ?

ପଦୁ—ଆମର ଦ' ଟଙ୍କା ଲେଖାଏଁ ଗ୍ନନ୍ଦା ହେଇଚ ଭାଇ ।

ମୋହନ—ହଉ ନିଅ । ତୋର' ଦୁଇ, ଆଉ ରଞ୍ଜନର ଦୁଇ ।

ମାସ୍ଯା—କ'ଣ ପଦୁ ରଞ୍ଜନ ସ୍କୁଲରେ ପଢି ଦ' ଟଙ୍କା କରି ଗ୍ନନ୍ଦା ନେବେ ?

ମୋହନ—ଓଃ, ତୋ କଥା ତୁ ବୁଝ୍ । ତାଙ୍କ ସ୍କୁଲରେ ଦ'ଟଙ୍କାରୁ କମ୍
ଚାନ୍ଦା କେହି ଦଉନାହାନ୍ତି, ମୁଁ ଜାଣେ ।

ମାୟା—ଓଃ, ଯୋଉ ଲେଣ୍ଡି ସ୍କୁଲ—ସେଥିରେ ପୁଣି ଦ'ଟଙ୍କା ଚାନ୍ଦା !
ନାହିଁ ଭଇ, ସେମାନେ ଦ'ଟଙ୍କା ନେଲେ ମତେ ଆଉ ଟଙ୍କାଏ ଦିଅ !

ମୋହନ—ଆଉ ପାହୁଲାଏ ବି ନୁହେଁ !

ମାୟା—ଆଉ ଟଙ୍କାଏ ଦବନି ଭଇ ?

ମୋହନ—ନା ।

ମାୟା—ନ ଦବ ଯଦି ଏଇ ନିଅ ରଖ ତମ ଟଙ୍କା, ମୋର
ଦରକାର ନାହିଁ । (ଫେରାଇଦେଲା)

ମୋହନ— ମାୟା !

ମାୟା—ନା, ମୋର ଦରକାର ନାହିଁ । (ମୁହଁ ବୁଲେଇ) ସେମାନଙ୍କ
ବେଲକୁ ଠନ୍ ଠନ୍ ହେଇ ଟଙ୍କା ବାହାରିପଡ଼ୁଛି ?

ମୋହନ—(ହସି) ତୋ ବେଲକୁ ତ ଟଙ୍କା କୋଉଠି ଅଟକି ଯାଇନାହିଁ !
ମାୟା—ମାୟା !

ମାୟା—(ଚଡ଼ିଉଠି) କାହିଁକି ଡାକୁଚ ?

ମୋହନ—ମୁଁ ଜାଣେ, ଆଜି ତୋ କଥା ନ ରହିଲେ କାଲି ସକାଳୁ ମୋ
ଜୋତାରେ ଫିତା ନ ଥିବ କି ଷ୍ଟେଥିସ୍କୋପ୍‌ଟା ଯାଇ ସଜନା
ଗଛରେ ଝୁଲୁଥିବ ।

ମାୟା—ମୁଁ ତମ ଜିନିଷ ଛୁଇଁ ଯାଏନାହିଁ !

ମୋହନ—ଚାନ୍ଦା ଟଙ୍କା ନେବୁନାହିଁ ?

ମାୟା—ନା ।

ମୋହନ—ଆଚ୍ଛା, ଆଚ୍ଛା—ଏଇ ନେ ଚାନ୍ଦା ପାଞ୍ଚ ଟଙ୍କା, ଆଉ ତୋ'
ଭଗ ପାଇଁ ସୁଧ ଟଙ୍କାଏ—ହେଲା ତ···? ନେ--ଏ ଟଙ୍କା ଉଠା ।

ମାୟା—ନାହିଁ, ମୋର ଟଙ୍କା ଦରକାର ନାହିଁ ।

ମୋହନ—ଛ'ଟଙ୍କା ଦେଲି ପରା ?

ମାୟା—ଛ'ଟଙ୍କା କରି କେହି କାହାକୁ ଦିଏନି—ଅମଙ୍ଗଳିଆ କଥା ।

ମୋହନ—(ହସିପକେଇ) ଆଚ୍ଛା, ଟଙ୍କା ସାଙ୍ଗକୁ ଏଇ ଲଜେନ୍‌ସ୍ ଏତକ ରହିଲା ! ହେଲା ତ ଏବେ ! (ଯାଉ ଯାଉ)ଲଜେନ୍‌ସ୍ ଏକା ଖାଇଦବୁ-ନାହିଁ, ସମସ୍ତଙ୍କୁ ବାଣ୍ଟିକରି ଦବୁ । (ଚାଲିଗଲା)

ପତୁ—ଅପା !

ମାମୁଁ—ମିଛଟାରେ ତ ଏତେଗୁଡ଼ାଏ ଟଙ୍କା ମାରନେଲ,ଆଉ ଏମିତି ଜୁଳୁ-ଜୁଳୁ କରି ଚାହିଁ ଠିଆହେଇଚ କାହିଁକି ବାବୁମାନେ ? ଯାଅ ।

ରଞ୍ଜନ—ଆମ ଭାଗ ?

ମାମୁଁ—ମୋ କପାଳକୁ ତ ଭନଭନଟା ରାକ୍ଷସ ଆସି ଜନ୍ମିଚ, (ଗୋଟାଏ ଲଜେନ୍‌ସ ପାଟିକି ପକେଇ )

ପହିଲି—ଅପା !

ମାମୁଁ—କ'ଣ ?

ପତୁ—ତୁ ଏକା ଖାଉଚୁ ?

ମାମୁଁ—ଖାଉନି, ଚାଖୁଚି ।

ରଞ୍ଜନ—ଚାଖୁଚୁ ? କେମିତି ? ଭଲ ?

ମାମୁଁ—ଉଁ, ବାଜେ···

ପହିଲି—ସେଇ ବାଜେରୁ ଗୋଟାଏ ଗୋଟାଏ ଦେ ।

ମାମୁଁ—(ହସିପକେଇ) ତମେମାନେ ପରା ମୋ ସୈନ୍ୟବାହିନୀ—ତମକୁ ନ ଦେଇ ମୁଁ ଏକା ଖାଇବି ! ଏଇ ନିଅ (ସମସ୍ତଙ୍କୁ ଭାଗକରି ଦେଲା) ବାସ୍—ଯାଅ ଏଥର—ପଳାଅ ! ( ସେମାନେ ଚାଲି ଯାଉଥିଲେ ) ଏ ପହିଲି, ଶୁଣିଲୁ ! (ପହିଲି ଫେରିଲା) ହଇରେ, ତୁ ଏଡ଼ିକି ବୋକା ! ଭାଇଙ୍କ ଆଗରେ ଚପ୍ ଖାଇବା କଥା କହୁଚୁ !

ପହିଲି—ଭୁଲ ହେଇଗଲା ଅପା ।

ମାମୁଁ—ହଉ, ଆଉ କେବେ ଇମିତି ବୋକାମି କରିବୁ ନାହିଁ ।

ପହିଲି—ନା । ପାଣି ଗିଲାସଟା ନେଇଯିବି ଅପା !

ମାମୁଁ—ନା—ଥାଉ, ତୁ ଯା । (ପହିଲିର ପ୍ରସ୍ଥାନ) ରଞ୍ଜନ, ତୁ ଗୋଟିଏ କାମ କର । ସେ ବହିତକ ସେଠୁ ଆଣି ଦେ । ( ରଞ୍ଜନ ଥାକ ଉପରୁ କେତେଖଣ୍ଡ ବହି ଆଣି ଦେଲା ) ।

ମାୟା—(ଟେବୁଲ ଉପରେ ସଜେଇ ରଖୁ ରଖୁ) ଲଜେନ୍‌ସ, ଆଲ୍ଗେବ୍ରା, ଚପ୍—English,History,Economics—ଉଃ ଭଗବାନ, ଏତେ ବହି କିମିତି ପଢ଼ିବ ? କିମିତି ପରୀକ୍ଷା ଦେବ ?

ରଞ୍ଜନ—ତୁ ଏଇନେ ପଢ଼ିବୁଟି ଅପା ?

ମାୟା—ହଁ, ପଢ଼ିବ ଯେ, ହେଲେ ଏ ବହିସବୁ ନୁହେଁ ! ଆଚ୍ଛା, ରଞ୍ଜନ···

ରଞ୍ଜନ—କ'ଣ ଅପା ?

ମାୟା—ସିଢ଼ି ଉପରକୁ ଉଠ୍ ।

ରଞ୍ଜନ—କାହିଁକି ଅପା ?

ମାୟା—ଉଠ୍, କହୁଚି !

ରଞ୍ଜନ—(ସିଢ଼ିରେ ଉଠି) ଉଠିଲି ଅପା ।

ମାୟା—ସେଇଠି ନଇଁପଡ଼ ।

ରଞ୍ଜନ—ନଇଁଲି ଅପା···

ମାୟା—ସେଠି ପାଞ୍ଚ ନମ୍ବର ପାହାଚ ସନ୍ଧିରେ କଣ ଦେଖୁଚୁ ?

ରଞ୍ଜନ—ବହିଖଣ୍ଡେ ।

ମାୟା—ବାସ୍, ନେଇଆ ।

ରଞ୍ଜନ—ଅପା, ଏଇଟା ତ "ଲାଲ ଦସ୍ୟୁର କାରସାଦ" ଗପବହି ! (ବହିଟା ଆଣିଦେଲା)

ମାୟା— ହଁ, ଗପ ବହି ।

ରଞ୍ଜନ—ଏଇ ବହିଟା ପରା ତୁ ସକାଳେ ପଢୁଥିଲୁ ବୋଲି ବାପାଙ୍କଠୁଁ ଗାଳି ଶୁଣିଥିଲୁ ?

ମାୟା—ହଁ, ସକାଳେ ପଢ଼ୁଥିଲି ବୋଲି ! ଏଇନେ ତ ରାତି ହେଲାଣି—ମୋର ଏତେବେଳକୁ ପଢ଼ୁ ପଢ଼ୁ ଟେବୁଲ ଉପରେ ଘୁମେଇ ଶୋଇ ପଡ଼ିବା କଥା । ନହେଲେ ମୋ କଦରୁ ମୁଁ ଘଣ୍ଟାଏ କାଟି ଡିଟେକ୍‌ଟିଭ ବହି ପଢ଼ିବି—ସେଥିରେ କାହାର କ'ଣ କହିବାର ଅଛି ? ତା'ଛଡ଼ା—ବାପା ତ ନ' ଟା ଆଗରୁ ତଳକୁ ଆସିବେ ନାହିଁ ! ହଉ—ତୁ ଯା ।

( ରଞ୍ଜନ ଚାଲିଗଲା ପରେ ମାୟା ବନ୍ଧ ଖୋଲି) ହୁଁ, କୋଉଠୁ ଛାଡ଼ିଥିଲି—କୋଉଠୁ ଛାଡ଼ିଥିଲି—ପ୍ରାଇଭେଟ ଡିଟେକ୍‌ଟିଭ ଶଶାଙ୍କ ସେଇ ମେଘ ଅନ୍ଧାର ରାତିରେ ଯାଇ ଲାଲ ଦସ୍ୟୁର ଆଡ଼୍‌ଡ଼ାରେ ପହଞ୍ଚିଲା । (ଯନ୍ତ୍ର ସଙ୍ଗୀତ ବାଜି ଉଠିଲା । କେତେବେଳେ ଆଗୁର କେତେବେଳେ ଚପ୍ ପାଟିରେ ପକେଇ ମାୟା ଉପନ୍ୟାସ ପଢ଼ି ଚାଲିଥାଏ । ଉପନ୍ୟାସର ରୋମାଞ୍ଚକର ବର୍ଣ୍ଣନାର ପ୍ରତିକ୍ରିୟା ମାୟାର ଆଖି ମୁହଁରେ ଫୁଟି ଉଠୁଥାଏ···ଯନ୍ତ୍ର ସଙ୍ଗୀତ ଭିତରେ ଉପନ୍ୟାସର ଚରିତ୍ରମାନଙ୍କର କଣ୍ଠସ୍ୱର ଅନ୍ତରାଳରୁ ଶୁଣାଗଲା – )

ଲାଲଦସ୍ୟୁର କଣ୍ଠସ୍ୱର—ହାଃ—ହାଃ—ହାଃ—ହାଃ—ତୋ'ର ଏ ଦୁଃସାହସ ପାଇଁ ମୁଁ ତତେ ଧନ୍ୟବାଦ ଦେଉଛି ଶଶାଙ୍କ । କିନ୍ତୁ ମୋର ଦୁଃଖ ହେଉଛି ଯେ, ଏଥିପାଇଁ ତତେ ଆଜି ତୋର ମୂଲ୍ୟବାନ ଜୀବନଟାକୁ ଦେବାକୁ ପଡ଼ିଲା । ମୁଁ ଜାଣେ ଗୋଇନ୍ଦାଗିରି କରି ତୁ ଖୁବ୍ ନାଁ କମେଇଛୁ···ଅନେକ ନାମଜାଦା ଦସ୍ୟୁ, ଡକାୟତଙ୍କୁ ଧରେଇଛୁ— କିନ୍ତୁ ତୁ ଏ କଥା ଭୁଲିଗଲୁ କେମିତି ଯେ – ଏଥର ତୁ ଯାହା ସାଙ୍ଗରେ ଚାଲିବାଜି ଖେଳୁଛୁ, ସେ ଆଉ କେହି ନୁହେଁ ସେ ହେଉଛି ଭାରତ ବିଖ୍ୟାତ ଦସ୍ୟୁ-ସମ୍ରାଟ ଲାଲଦସ୍ୟୁ । ତୁ ଭାବିଥିଲୁ – ଏ ମେଘୁଆ ରାତିରେ ନିଶା ଖାଇ ମାତାଲ ହୋଇ ପଡ଼ିଥିବାବେଳେ ତୁ ମୋର ଆଡ଼୍‌ଡ଼ା ଦେଖାଇ କରି ମତେ ପୋଲିସରେ ଧରାଇ ଦବୁ ? କିନ୍ତୁ ହାୟ ଶଶାଙ୍କ, ତୋ' ନିଜ ଜାଲରେ ତୁ ନିଜେ ଧରା ପଡ଼ିଲୁ । ···କିଏ ଅଛି···

ଅନ୍ୟ ସ୍ୱର—ହାଣ୍ଡସ୍ ଅପ୍ !

ଲାଲଦସ୍ୟୁର ସ୍ୱର—କିଏ ?

ଅନ୍ୟସ୍ୱର—ତୋର ଯମ···ହା—ହା—ହା ··(ଯନ୍ତ୍ର ସଙ୍ଗୀତ ଚାଲିଥାଏ ।
(ପୀତାମ୍ବରବାବୁ – ମାୟାର ବାପା, ସିଡ଼ିରେ ଓହ୍ଲାଇ ଆସୁ ଆସୁ ଝିଅର ଏ ତନ୍ମୟ ଅବସ୍ଥା ଦେଖି ଅଧା ସିଡ଼ିରେ ଅଟକି ଗଲେ )

ପୀତାମ୍ବର—ମାୟା – (ମାୟା କିନ୍ତୁ ପଢ଼ି ଚାଲିଥାଏ) ମାୟା--

ମାଷ୍ଟ୍ରା—(ବହି ଉପରୁ ମୁହଁ ନ ଉଠେଇ) କଏ ଆସି କାହିଁକି ଗୋଳମାଳ କରୁଚ···ମୋର ପଢ଼ା ଅଛି···ମୁଁ ଏଇନେ ଖାଇବି ନାହିଁ, ଯା ।

ପୀତାମ୍ବର—(ଆଗେଇ ଆସୁ ଆସୁ) କଅଣ ଏମିତି ମନ ଦେଇ ପଢ଼ା ହଉଚ ଦେଖେଁ ! (ମାଷ୍ଟ୍ରାର ଧ୍ୟାନ ଭାଙ୍ଗିଗଲା । ଟେବୁଲ ଉପରୁ ଚଟାପଟ୍ ଖାଇବା ଜିନଷତକ ଅନ୍ୟ ସ୍ଥାନରେ ରଖି ଗୋଟାଏ ହାତରେ ଉପନ୍ୟାସ ବହିଟା ଧରି ଉଠି ଠିଆହେଲା )

ମାଷ୍ଟ୍ରା—ଖାଇଲାବେଳକୁ ସମସ୍ତେ ଖାଇବେ, ଆଉ ଅଇଁଠା ଗୋଟେଇବ ମୁଁ !

ପୀତାମ୍ବର—କାଲୁ ଅଇଁଠା ଗୋଟେଇବା ଆଗରୁ ଏମିତି ମନୋଯୋଗ ଦେଇ କି ବହି ପଢ଼ା ହଉଥିଲା, ଦେଖି ?

ମାଷ୍ଟ୍ରା—ସାହିତ୍ୟ ବହି ।

ପୀତାମ୍ବର—ସବୁ ବହି ତ ଟେବୁଲ ଉପରେ ଥୁଆହେଇଚ । ସେ ବହିଟା ହାତରେ ରହିଲା କାହିଁକି ? ଦେଖି ବହିଟା···

ମାଷ୍ଟ୍ରା—ନା···

ପୀତାମ୍ବର—ମାଷ୍ଟ୍ରା !

ମାଷ୍ଟ୍ରା—ମୁଁ ତମ ସାଙ୍ଗରେ ମୋଟେ କଥା କହିବ ନାହିଁ ଯେ ? ଘଣ୍ଟାଟାଏ ଦବ ଦବ ବୋଲି କହି ଆଜଯାଏ ଦଉନ ! ପରୀକ୍ଷାରେ ଫେଲ୍ ହୋଇଗଲେ ମତେ ଆଉ ଦୋଷ ଦବନି । ସମସ୍ତେ ଜାଣିଲେ ଯିନା ଲେଖିବ । ସାରା ହଲ୍‌ରେ ମୋଟେ ଗୋଟାଏ ବୋଲି ଘଣ୍ଟା ।

ପୀତାମ୍ବର—ମୁଁ ତତେ ବହି କଥା ପଚାରୁଚି – କି ବହି ସେଇଟା ?

ମାଷ୍ଟ୍ରା – ଯୋଉ ବହି ହଉ, ବହିତ ପଢୁଚି ପରୀକ୍ଷା ଦବାପାଇଁ···ଘଣ୍ଟା ନ ହେଲେ ପରୀକ୍ଷା ଦେବି କେମିତି ?

ପୀତାମ୍ବର – ଓ, ଇମିତି କଥା ! ଆଚ୍ଛା, ପରୀକ୍ଷା ଦିନ ନ ହେଲା ମୋ ଘଣ୍ଟାଟା ନେଇଯିବୁ !

ମାଷ୍ଟ୍ରା – କ'ଣ ହେଲା ବାପା ? ତମର ସେ ଭୋଡ଼ଙ୍ଗା ଘଣ୍ଟାଟା ମୋର ଏ ହାତରେ ପିନ୍ଧିବି ? ( ହସିଉଠିଲା ) କ୍ଲାସରେ ମତେ ଆଉ ଚଟେଇ ଦେବେ ?

ପୀତାମ୍ବର—କାହିଁକି ? ସମସ୍ତ ଦେଖିବା କଥା ତ !

ମାୟା—ଛ୍ୟା, ଛ୍ୟା—ତମ ଘଣ୍ଟା ଆଉ ମୋ ହାତ—ଅସମ୍ଭବ ! ହେଇଟି ବାପା, ମୁଁ ଆଗରୁ କହୁଚ, ଆଜି ଏଇନେ ବି କହୁଚ—ମୋ ଘଣ୍ଟାର ସାଇଜ ଡେନ୍ମାକ ମଞ୍ଜି, କମ୍ଭା ଖୁବ୍ ବେଶୀ ହେଲେ ମୋ ମଝି ଆଙ୍ଗୁଠି ଟିପଠୁଁ ବଡ଼ ହେବନାହିଁ ।

ପୀତାମ୍ବର—ଡେନ୍ମାକ ମଞ୍ଜି ସାଇଜର ଘଣ୍ଟା ଆସିଲେ ପାସ ହବ ?

ମାୟା—ନିଶ୍ଚୟ ହବ ।

ପୀତାମ୍ବର—ନ ଆସିଲେ ?

ମାୟା—ନ ଆସିଲେ···(ଟିକିଏ ଶଙ୍କି ଯାଇ) ଆଶା ଖୁବ୍ କମ୍ ।

ପୀତାମ୍ବର—ହାତରେ ଡିଟେକ୍ଟିଭ ଉପନ୍ୟାସ, ଟେବୁଲ ଉପରେ ଆଘ୍ରର, ଚପ୍, ଲଜେନ୍ସ—ଏଇ ପଢ଼ାପଢ଼ି ହଉଚ—ନା ? ( ଟିକିଏ ରହି ) ମାୟା !

ମାୟା—କ'ଣ ?

ପୀତାମ୍ବର—ତୁ ଯେ ଏଥର କୌଣସିମତେ ପାସ୍ କରିପାରିବୁ ନାହିଁ ତା ମୁଁ ଠିକ୍ ବୁଝୁଚି ।

ମାୟା—ହୁଁ, ତା ଆଉ ବୁଝନ୍ତି ନାହିଁ ।

ପୀତାମ୍ବର—ତୁ ଜାଣୁ, ମୁଁ ତୋ ବାପା !

ମାୟା—(ପିଲାଳିଆ ଭାବରେ) ଦୁନିଆରେ ସମସ୍ତେ ଜାଣନ୍ତି ତମେ ମୋ ବାପା···ମୁଁ ତମ ଝିଅ ହେଇ ଆଉ ଏତିକ ଜାଣି ନାହିଁ ।

ପୀତାମ୍ବର—ଫାଜିଲାମି ବନ୍ଦ କର ମାୟା ।

ମାୟା—ଲୋକଙ୍କୁ ଥଟ୍ଟା ପରିହାସ କଲେ ଫାଜିଲାମି ହୁଏ ବୋଲି ମୁଁ ଜାଣିଥିଲି । ହେଲେ ଏକାବେଳକେ ନିପଟ ସତକଥାଟା କହିଲେ ଯେ ଫାଜିଲାମି ହୁଏ···

ପୀତାମ୍ବର—ମାୟା ! ଗୋଟାଏ ଝିଅ ବୋଲି ଆଦର ପାଇ ପାଇ ତୁ ଏକାବେଳେକେ ନଷ୍ଟ ହେଇଗଲୁଣି !

ମାୟା—ହଁ କହିଯାଅ—ଯାହା ମନକୁ ଆସୁଚି କହିଯାଅ, ଅଟକ ଗଲ କାହିଁକି ? ମତେ ଆଦର ସୋହାଗ କରିବାପାଇଁ ଏ ଘରେ ପାଞ୍ଚ ଦଶଟା ଦାସୀ ପରିବାରି ଖଞ୍ଜା ହେଉଇଚନ୍ତି ନା ! (କାନ୍ଦିବାର ଛଳନା କରି) ପରୀକ୍ଷା ବେଳ—ପଢ଼ା ନଷ୍ଟ ହବ ବୋଲି ଜଣେ ନ କରି ଯଦି ଘରକର ପୂର୍ବାଗ୍ରଙ୍କି କହୁ ଗୋଟାଏ କାମ ବରାଦ କଲି, ସ୍ତ୍ରୀ ମୁହଁ ଏଣିକି ତ ତା ମୁହଁ ତେଣିକି । ମୁଁ ଯେମିତି ଏ ଘରେ ଗୋଟାଏ ବଳେଇ କି କୁକୁର···ଡାକ ଡାକ ପାଟି ପଡ଼ିଯିବ ପଛେ ସେଇଠି ବସିଥିବେ, କେହି ପଦେ ଜବାବ ବି ଦେବେ ନାହିଁ – ଆଉ ମୁଁ କୁଆଡ଼େ ଆଦରରେ ଫାଟି ପଡ଼ୁଚି ।

ପୀତାମ୍ବର—ମାୟା, ତୁ କାନ୍ଦୁଚୁ ମାୟା ! ଏଇ କଥାରେ କାନ୍ଦୁଚୁ ?

ମାୟା—ଏଇ କଥାରେ କାହିଁକି କାନ୍ଦିବ ? ମୋର ସୁବିଧା ଅସୁବିଧା—ହାନି ଲାଭ କିଏ କେବେ ବୁଝେ ନା ଆଜି ବୁଝୁଚି ?

ପୀତାମ୍ବର—ତୋର ପୁଣି ସୁବିଧା ଅସୁବିଧା !···ଆଚ୍ଛା ଆଚ୍ଛା, ତୁ କାନ୍ଦନା । ସୁନା ମା'ଟା ପରି, ଆଉ କାନ୍ଦ ନାହିଁ । ମୁଁ ତୋ' ବୋଉକୁ କହିଦଉଚି, ତାଙ୍କର ଏମିତି କି କାମ ଯେ, ଗୋଟାଏ ବୋଲି ଝିଅ, ତା' କଥା ବୁଝିବାକୁ ତାଙ୍କୁ ବେଳ ମିଳୁନାହିଁ ।

ମାୟା—(ଖୁସି ହୋଇ, ମୁହଁରେ ହସ ଆଣି) ତମର ଯୋଗ୍ୟ ବୁଦ୍ଧି ବାପା ! ମୋ କଥା ବୁଝିବାପାଇଁ ବୋଉର କ'ଣ ଏଣିକି ବଳ ବୟସ ଆସୁଚି ? ଏଣିକି ସେ ବିଶ୍ରାମ କରିବା କଥା, ନା ଓଲଟି ତମେ ତା ଉପରେ ଚପଟ ପକେଇବାକୁ ଯାଉଚ ? ବରଂ ତମେ ପୂର୍ବାଗ୍ରି ଲୋକରଙ୍କୁ ଖୁବ୍ କଡ଼ା ତାଗିଦା କରିଦିଅ, ଏଣିକି ମୁଁ ଯେତେବେଳେ ଯାହା କହିବ, ସବୁ କାମ ବନ୍ଦ ରଖି ମୋ କାମ ଆଗେ କରିଦେବେ । ତା' ନ ହେଲେ···ବୃଥା ମୋ ସମୟ ନଷ୍ଟ···ସମୟ ନଷ୍ଟ ମାନେ ପଢ଼ା ନଷ୍ଟ···ଆଉ ପଢ଼ା ନଷ୍ଟ ମାନେ···ତମେ ତ ଜାଣ, ପରୀକ୍ଷା ନଷ୍ଟ ·· ଫେଲ !

ପୀତାମ୍ବର—ନାଇଁ ମା, ମୁଁ ତୋର ସବୁ ସୁବିଧା କରେଇଦଉଛି । ତୁ ଫେଲ୍ ହେଲେ ମୁଁ ଲୋକଙ୍କ ଆଗରେ ମୁହଁ ଦେଖେଇ ପାରିବି ନାହିଁ ।

ମାୟା—ଲୋକଙ୍କ କଥା ତମେ ଛାଡ଼ ବାପା ! ସେମାନଙ୍କ କଥାରୁ ମିଳିବ କ'ଣ ? ପରୀକ୍ଷାଟା ଯେ ଖୁବ୍ ଭାଗ୍ୟ ଉପରେ ନିର୍ଭର କରେ । ତମେ ନିଜେ ଏତେ ଭଲ ଛାତ୍ର ଥାଇ କମିତି ଥରେ ଫେଲ୍ ହେଇଯାଇଥିଲ !

ପୀତାମ୍ବର—ସେ ଭିନ୍ନ କଥା ।

ମାୟା—ମୋଟେ ଭିନ୍ନ କଥା ନୁହେଁ ବାପା—ସବୁ ପରୀକ୍ଷା ଏକ—ସବୁର ମୂଳରେ ସେଇ ଭାଗ୍ୟ ।

ପୀତାମ୍ବର—ତା' ମାନେ ତୁ ଆଗରୁ କହିରଖୁଚୁ ଯେ ତୁ ଫେଲ୍ ହେବୁ ?

ମାୟା—ନା—ମୁଁ ଅବଶ୍ୟ ଫେଲ୍ ହେବି ନାହିଁ—ତଥାପି ଭାଗ୍ୟ ହିଁ ଭାଗ୍ୟ । ତା' ଉପରେ କାହାର ଲଗା ନାହିଁ କି ପଘା ନାହିଁ । ···ଏଠି ଭାରି ଗରମ ହଉଚି ବାପା···ମୁଁ ଉପରେ ପଢ଼ିବି ଯାଉଚି । (ବହି କେତେ ଖଣ୍ଡ ଓ ଦର୍ପଣରେ ଖାଇବା ଜିନଷତକ ଧରି ଉପରକୁ ଉଠିଗଲା । ଭିତରୁ ଆସିଲେ ମହାବୋଉ)

ମହାବୋଉ—ହୁଁ, ବାପ ଝିଅଙ୍କ ସୁଖ ଦୁଃଖ ସରିଲା ?

ପୀତାମ୍ବର—ତମେ ସବୁ ଶୁଣୁଥିଲ ତ ?

ମହାବୋଉ—ଏ ଘରେ ତ ମୋର ସେଇ କାମ—ସବୁ କଥା ଦେଖିବି, ଶୁଣିବି···ହେଲେ କାହାକୁ କିଛି ନ କହି ତୁନି ହୋଇ ରହିବି ।

ପୀତାମ୍ବର—ସମସ୍ତେ ଯେ ଏ ଘର ଏ ଘର ହଉଚ, ଏ ଘରଟା ତା'ହେଲେ କାହାର ?

ମହାବୋଉ—ତମେ କହୁନ କାହାର ? ···ଆଦର ପାଇ ଯଦି ମାୟା ନଷ୍ଟ ହେଉଥାଏ ସେ ତମର ଦୋଷରୁ ହଉଚି ।

ପୀତାମ୍ବର—ଆରେ—ହଠାତ୍ ମୋ ଉପରେ ଏ ଆକ୍ରମଣ କାହିଁକି ?

ମହାବୋଉ—ନଭେଲ୍ ପଢ଼ୁଥିଲା ବୋଲି ତ ନାଲି ଆଖି ଦେଖେଇ ଶାସନ କରୁଥିଲ—ଟିକେ ପୁଣି ଏମିତି ତଳେଇଗଲ କାହିଁକି ?

ପୀତାମ୍ବର—କି ଆଶ୍ଚର୍ଯ୍ୟ ! ପଦ୍ୟେ କଥାରେ ପିଲାଟା ଝର୍‌ଝର୍ ହୋଇ କାନ୍ଦ ପକାଇଲା ।

ମହାଦେଈ—କ'ଣ ତମ ଶାସନରେ ? ଏଇଆ ତମେ ବୁଝିଲ ? ଖଟା ଖାଉଥିଲା···ସେଇ ରଗ ଆଙ୍ଗୁଠିଟାକୁ ଆଖିରେ ଗେଞ୍ଜି ଦେଇ ପର୍ ଲୁହ ଗଡ଼େଇଲା ।

ପୀତାମ୍ବର—(ହସିଉଠି) କ'ଣ—ମାଆ୍ଆ ତା'ହେଲେ ଏମିତି ମତେ ଠକି ଦେଇ ଯାଇଚ !

ମହାଦେଈ—ଲାଜ ମାଡ଼ୁ ନାହିଁ—ଆହୁରି ପୁଣି ହସୁଚ ?···ହେଇଥି, ଏ ଢଙ୍ଗ ଗୁଡ଼ା !···ଘର ଭିତରେ ଝିଅ ହୋଇଚି ବୋଲି କେଉଁଦିନ ସେ ଏମିତି ଉଦ୍ଧଣ୍ଡୀ ହୋଇ ବଢ଼ିବ ? ଆସି ସତର ପୂରି ଅଠର ହେଲା—କାଲି ଗୁଡ଼ା ପଅରଦିନ ଶାଶୁଘରକୁ ଯିବ—ଶାଶୁଘର ଗୃହଚଳନ ରଙ୍ଗଢଙ୍ଗ—ସଣ୍ଣୁଣା କେଉଁଦିନ ଆଉ ଶିଖିବ ?

ପୀତାମ୍ବର—ସେ ନଶିଖିବାଟା କଣ ମୋ ଦୋଷ ?

ମହାଦେଈ—ମୁଁ କ'ଣ ଜାଣିନାହିଁ, ତମେ ମୋତେ ଠେଲି ମୋ ଉପରକୁ ଫିଙ୍ଗିବ । ହେଲେ ସେକାଳ ପଖାଳ ଆଉ ନାହିଁ । ଆମ ମରହଟ୍ଟୀ ମା' ଖୁଡ଼ୀଙ୍କଠୁ ଏ କାଳ ଝିଏ ସଣ୍ଣୁଣା ଶିଖିବାକୁ ନାକ ଟେକିଲେଣି ।

ପୀତାମ୍ବର—ସେ କଥା ତ ମୁଁ ବୁଝିପାରୁଚି । ହେଲେ ଆଜିକାଲିକା ଝିଅ-ବୋହୂଙ୍କ ସଣୁଣା ଶିଖିବାପାଇଁ ଯଦି କୋଉ ସ୍କୁଲ ବା କଲେଜର ସନ୍ଧାନ ତମେ ମତେ ଦେଇପାରନ୍ତ, ତା'ହେଲେ ମାଆ୍ଆକୁ ସେଠିକି ପଠେଇଦିଅନ୍ତେ ।

ମହାଦେଈ—ମୋ ରଗ ଆଉ ଜାଳା ନାହିଁ କହ୍ନ ଦଉଚ ! ଗୋଟାଏ ଇସ୍କୁଲରେ ତ ପାଠ ପଢ଼ି ଏ ଦଶା···ଆଉ ଇସ୍କୁଲ କଲେଜ ପୁଣି ଖୋଜା ହଉଚି ! କେଉଁଟା ଇସ୍କୁଲରେ ସଣୁଣା ଶିଖି ଆମେ ଶାଶୁଘର କରିଥିଲୁ ?

ପୀତାମ୍ବର—ମୁଁ ତ ସେଇ କଥା କହୁଚି—ତମେ ଯେମିତି ଶିଖି ଶିଖି ଶିଖିଗଲ, ସେ ସେମିତି···

ମଣ୍ଟିବୋଉ—ସେମିତ ଶିଖି ଶିଖି ଶିଖିବା ଝିଅ ସେ ନୁହଁନ୍ତି । ଆଉ ଶିଖିବ କାହାଠୁ ? ପୁଅ ତ ପାଠ ପଢ଼ିଲା, ଡାକ୍ତର ହେଲା, ଗୃହକର୍ତ୍ତା କଲା… ତାକୁ ଆଉ କ'ଣ ବାହା କରିବ ନାହିଁ ? ବୁଢ଼ା ହବାଯାଏ ସେ ଏମିତ ବସିଥିବ !

ପୀତାମ୍ବର—ଓ, ତମେ ତା'ହେଲେ କହିବାକୁ ଚାହୁଁ ଯେ ମୋହନ ବାହା ହେଇ ତା' ସ୍ତ୍ରୀ ଘରକୁ ଆସିଲେ ମାଆ ତାଠୁଁ ଶାଶୁଘର ଚାଲିଚଳନ ସବୁ ଶିଖିବ ? ହେଲେ ମଣ୍ଟିବୋଉ, ତମର ଯଦି ବି. ଏ. କି ଏମ୍. ଏ. ପାସ୍‌କଲା ବୋହୂଟିଏ ଘରକୁ ଆସେ…

ମଣ୍ଟିବୋଉ—ବି. ଏ. ଏମ୍. ଏ.ରେ କଥା ନାହିଁ—କଥା ଅଛି ନିଜ ମନରେ । ଏଇ ମୁରଲୀବାବୁଙ୍କ ବୋହୂ—ବି. ଏ. ପାସ୍—କେମିତ ଚଳୁଛି ଦେଖିବ ଯାଅ—ପାନରୁ ଚୂନ ଟିକେ ବି ଖସିବାର ଯୁ' ନାହିଁ । ଆଉ ତମର ସେ ସାଙ୍ଗ, କ'ଣ ତାଙ୍କ ନାଁ ଟି—ହଁ ହୃଦାନନ୍ଦବାବୁ—ତାଙ୍କ ବୋହୂ— ବି. ଏ. ଫେଲ୍ ! ବାହା ହେଲା ବାସିଦିନ ମୁଣ୍ଡରୁ ଲୁଗା କାଢ଼ି ନିଜ ହାତରେ ଚିଠି ନେଇ ଡାକଘରେ ପକେଇ ଦେଇ ଆସିଲା । ଶାଶୁ ଶଶୁର ଏଣେ ଭକୁଆ ହେଇ ଗାଲରେ ହାତ ଦେଇ ବସିଛନ୍ତି । ଛି !

ପୀତାମ୍ବର—ଏଇ ମୋହନ ତ ଆଇଲାଣି—ବାହା ହବା କଥା ତାକୁ କୁହ । ସେ ତ ବାହା ହବାକୁ ସବୁଦିନେ ଅରାଜି । ( ମୋହନ ଭିତରୁ ଆସିଲା )

ମଣ୍ଟିବୋଉ—କାହିଁକି—ତମେ କହୁନ ?

ମୋହନ—କ'ଣ ବୋଉ ?

ମଣ୍ଟିବୋଉ—ତୋ ବାପାଙ୍କୁ ପଚାର…

ପୀତାମ୍ବର—ଆଜିକି ତିରିଶ ବର୍ଷ ହେଇଗଲା—ଏ ଘରସଂସାର ତମେ ଏକା ଏକା ଚଳେଇ ଆସିଚ ବୋଲି ତମ ଗର୍ବର ସୀମା ନାହିଁ । ଆଜି ସେ ମତେ ପଚାରିବ କାହିଁକି ?

ମଣ୍ଟିବୋଉ—ନହେଲା ଏବେ ତମେ ନ ଶୁଣ ।

ମୋହନ—ତୁ ଆଗ ମୋ କଥା ଶୁଣ ବୋଉ । କେଇଦିନ ମୁଁ ଏ ବେଳା ତରକାରି ସାଙ୍ଗରେ ସେ ବେଳା ଭାତ ଖାଇ ଚଳିବ ? ଡିଉଟିରୁ ଫେରି ଦିନେହେଲେ ତାଜା ଗରମ ଦି'ଟା ମୋ ଭାଗ୍ୟରେ ଜୁଟିଲା ନାହିଁ ।

ମହାବୋଉ—ଦୁନିଆରେ ତୁ ଏକା ଡାକ୍ତର ହୋଇଚୁ ନା ଆଉ କେହି ଡାକ୍ତର ହୋଇଚନ୍ତି ? ସବୁ ଡାକ୍ତର ତ କାମ ସାରି ଦିନ ବାରଟା ଗୋଟାଏକୁ ଘରକୁ ଫେରୁଚନ୍ତି—ତୋର କାହିଁକି ସନ୍ତ ଗଡ଼ୁଚି ?

ମୋହନ—ସେ ଭିନ୍ନ କଥା । ହେଲେ ମୁଁ ଦଫା ଦଫା କହିଦଉଚି—ନିଜେ ଡାକ୍ତର ହୋଇ ମୁଁ ଏଣିକି ଆଉ ଏ ଅଖାଦ୍ୟ ଖାଇପାରିବିନାହିଁ ।

ମହାବୋଉ—ସ୍ଥା' ବୋଲି ତୁ ମୋରି ଉପରେ ଚଢ଼ଉ କରିବାକୁ ଆସିଚୁ ! ତିରିଶ ବର୍ଷ କାଳ ଏ ଘରେ ଖଟି ଖଟି ମୁଁ ଆସି ଭୂଇଁରେ କତରିଲଗା ହେଲିଣି···

ମୋହନ—କି ଆଶ୍ଚର୍ଯ୍ୟ କଥା ! ସବୁ ଦିନେ ତ ତତେ କହି ଆସିଚି—ଆଜି ପୁଣି କାହା ପାଖକୁ ଯିବ ?

ମହାବୋଉ—ନାହିଁ, ସେ ପାଠ ଏଣିକି ଆଉ ଚଳିବ ନାହିଁ ! ପାଠଶାଠ ପଢ଼ି ମଣିଷ ହେଲୁ, ନିଜ ମୁଣ୍ଡକୁ ନିଜ ହାତ ପାଇଲୁ, ଏଣିକି ତୋ କଥା ତୁ ବୁଝ ।

ମୋହନ—ମୋ କଥା ମୁଁ ବୁଝିବି···ମାନେ ?

ମହାବୋଉ—ଛୁଆଟିଏ ହୋଇଚୁ ଯେ ମାନେ ବୁଝିପାରୁନୁ ? ହଇରେ, ପାଠ ପଢ଼ିଲୁ, ଚାକିରି କଲୁ, ତୁ ଆଉ କ'ଣ ବାହାହେବୁନି ?

ମୋହନ—କ'ଣ କହିଲୁ—ବାହା !

ମହାବୋଉ—କିରେ, କିରେ ବାହା ନାଁ ଶୁଣି କଣ ଆକାଶରୁ ପଡ଼ିଲାଭଳି ହଉଚୁ ? ବାହାଘରଟା କ'ଣ ଦୁନିଆଁରେ ନୂଆ କଥାଟାଏ ହୋଇଚି ? ମୁଁ ଏ ବୟସରେ କେମିତି ହଇରାଣ ହଉଚି ଦେଖୁଚୁନି ? ବାହାହୋଇ ବୋହୂଟିଏ ଘରକୁ ଆଣିଲେ···

ମୋହନ—ଆଚ୍ଛା, ଆଚ୍ଛା, ଦେଖିବା ସେ କଥା । ବାପା, ଆପଣଙ୍କ ଔଷଧଟା ଆପଣଙ୍କ ଆଲମିରାରେ ଥୋଇଦେଇଚି—କାଲି ସକାଳୁ ଆରମ୍ଭ କରିବେ ।

ମହାବୋଉ—ଆରେ ମୁଁ ପଚା କ'ଣ କହୁଚି···

ମୋହନ—ଏଇ କଏ ରୋଗୀ ଆସିଲେଣି ନା କଣ ? ମୁଁ ଯାଏ । ( ମୋହନ ଚାଲିଗଲା )

ମହାବୋଉ—ଦେଖିଲ ତ···

ପୀତାମ୍ବର—କଥାଟା ତ ତମେ ଆରମ୍ଭ କରିଥିଲ, ଦେଖିବା କଥା ମତେ କାହିଁକି କହୁଚ ?

ମହାବୋଉ—ତମେ ବି ଏଇଆ କହିବ !

ମାଳ୍ପା—(ଉପରୁ) ପୂଷ୍ପାଶ୍ରୀ···ପୂଷ୍ପାଶ୍ରୀ ।

ମହାବୋଉ—ଏଇ···ତାଙ୍କର କାହିଁକି ପୂଷ୍ପାଶ୍ରୀକି ଖୋଜାପଡ଼ିଲାଣି ।

ପୀତାମ୍ବର—ପୂଷ୍ପାଶ୍ରୀ···

ମହାବୋଉ—ତମେ ରୁହ । ସବୁ କଥାରେ ଚାକର ପୂଷ୍ପାଶ୍ରୀଙ୍କ ଉପରେ ଠାକ ରଖି ଲୁଆଗୁଡ଼ାକ କର୍ମଟୋକି ଦେଇଯାଉଚନ୍ତି ।

ମାଳ୍ପା—(ସିଡ଼ି ଉପରକୁ ଆସି) ପୂଷ୍ପାଶ୍ରୀ···

ମହାବୋଉ—କାହିଁକି ଡାକୁଚୁ ? ପୂଷ୍ପାଶ୍ରୀ କ'ଣ କରିବ ?

ମାଳ୍ପା—(ରହି ରହି) ଟିକିଏ ଯୋରଷ ତେଲ ଆଣିଦେବ ।

ମହାବୋଉ—ଯୋରଷ ତେଲ କ'ଣ ହବ ?

ମାଳ୍ପା—ପଢ଼ି ପଢ଼ି ନିଦ ମାଡ଼ୁଚି ଯେ ଆଖିରେ ତେଲ ମାରି ପଢ଼ିବ ।

ପୀତାମ୍ବର—ଓ ! ···ପୂଷ୍ପାଶ୍ରୀ—ପୂଷ୍ପାଶ୍ରୀ—

ମହାବୋଉ—ରହିବଟି ତମେ···ଆଖିରେ ତେଲ ମାରିବୁ ନା ଆଲୁଅରେ ତେଲ ପଡ଼ି ଚକଟାହେବ ?

ମାଳ୍ପା—(ଅନୁଯୋଗକରି) ଦେଖୁଚ ବାପା !

ମହାବୋଉ—ବାପା କ'ଣ ଦେଖିବେ ? ତୋର ଯଦି ତେଲ ଦରକାର ରୁ ନିଜେ ଯାଇ ନେଇଆ—ପୂଷ୍ପାଶ୍ରୀ ରନ୍ଧା ଛାଡ଼ି ଆସିପାରିବନାହିଁ ।

ମାୟା—ଦେଖିଲ ତ ବାପା…ତମେ ମତେ ଏଇନେ ପର୍ କହୁଥିଲ ମୋ କାମ ବେଳକୁ ଚାକର ପୂଝାରୀ ତାଙ୍କର ସବୁ କାମ ଛାଡ଼ି ମୋ ପାଖରେ ଆସି ହାଜର ହେବେ—ବୋଉ କଥା ଶୁଣୁଚଟି । ନ ହେଲା ଏବେ, ମୋ ପଢ଼ା ନ ହଉ । ମୋର କଣ ଯାଉଚ, ମୁଁ ଯାଉଚି ଆରାମରେ ଶୋଇବି । ମୋ ପଢ଼ା ନଷ୍ଟ ହେଲେ ତମ ଟଙ୍କା ନଷ୍ଟ, ମୋର କ'ଣ ଯାଉଚ ? ( ଉପରକୁ ଚାଲିଗଲା )

ମହାବୋଉ—ଭଲ, ଭଲ ଧମକେଇ ଶିଖିଚୁ ଲେ ମା… । ଏମିତ ବଢ଼ି ଶାଶୁଘର ଅମଡ଼ାବାଟରେ ପାଦ ଥୋଇ ଏକା ମଣିଷ ହବୁ ! (ପୀତାମ୍ବର ହସୁଥାନ୍ତି) ଝିଅଙ୍କ ଢଙ୍ଗ ଦେଖି ଲଜ ମାଡ଼ୁ ନାହିଁ ଯେ, ପୁଣି ମୁହଁକୁ ଅନେଇ ହସୁଚ ! ଆସ ତେଣେ ରନ୍ଧା ସରିବେଣି—ଖାଇବ ଆସ ।

## ଦ୍ୱିତୀୟ ଦୃଶ୍ୟ

[ ପୀତାମ୍ବର ବାବୁଙ୍କ ଅଗଣା ]

( ଗୋଟିଏ ଆରଶା ପିଠା ଖାଇ ଖାଇ ଖୁବ୍ ସନ୍ତର୍ପଣରେ ପହଲି ଆସିଲା । ଅନ୍ୟମାନଙ୍କ ଦୃଷ୍ଟିର ଅନ୍ତରାଳରେ ରହି ଯେମିତ ସେ ପିଠାଟା ଖାଇ ଦବାକୁ ଚାହେଁ । ଏତିକବେଳେ ଅନ୍ୟ ଦଗରୁ ଆସିଲା ମୋହନ । ସେ କାମରୁ ଫେରଚ । ସମୟ ଅପରାହ୍ନ । )

ମୋହନ—କିରେ ପହଲି, କ'ଣ କରୁଚୁ ?

ପହଲି—କିଛି ନାହିଁ ଭାଇ, କିଛି କରୁନ ।

ମୋହନ—ପିଠା ଖାଉଚୁ ? କି ପିଠା ?

ପହଲି—ଏଇ ଗୋଟାଏ ବୋଲି ଆରଶା ପିଠା, ଭାଇ ।

ମୋହନ—ଆଜି କ'ଣ ଆରଶା ପିଠା ଘରେ ହେଇଚ…

ପହଲି—ନାହିଁ ଭାଇ, ପିଠା ଆଜି ହେଇନ ।

ମୋହନ—ହେଇନି ତ, ତୁ ଆଣିଲୁ କୋଉଠୁ ? ତତେ କିଏ ଦେଲା ?
ପହଲି—ମତେ କେହି ଦେଇନି ଭାଇ ।
ମୋହନ—ଆଉ ତେବେ ଆଣିଲୁ କୋଉଠୁ ? ଚୋରି କରିଚୁ କିରେ ?
ପହଲି—ଚୋରି ?
ମୋହନ—ହଁ ତ, ଚୋରି କରିଚୁ ।
ପହଲି—ତମେ ଖଣ୍ଡେ ଖାଇବ ଭାଇ ?
ମୋହନ—(ହସି) ନା—ନା—ମୁଁ ଏତେବେଳେ ପିଠା ଖାଏନା—ତୁ ଖା—
ଖା···ମୁଁ ଯାଉଚି, ତୁ ଖା—( ମୋହନ ଗୁଲିଗଲେ । ଆସିଲା ମାଧୁରୀ )
ମାଧୁରୀ—ଓ ବାବୁ ସାହେବ, କ'ଣ ଖିଆ ହଉଚି ?
ପହଲି—( ନିରୁତ୍ତର )
ମାଧୁରୀ—କିରେ ପଗ୍ରୁରୁଚି ପରା କ'ଣ ଖାଉଚୁ ?
ପହଲି—( ଖାଇବା ଅବସ୍ଥାରେ ) ଚକୁଳି ପିଠା ।
ମାଧୁରୀ—କ'ଣ ? ଚକୁଳି ପିଠା ? ଚକୁଳି ପିଠା କୋଉଠୁ ପାଇଲୁ ?
ପହଲି—ନାଇଁ ନାଇଁ, ପିଆଜି ।
ମାଧୁରୀ—ଦେଖି ତୋ' ପାଟି ଆଁ କଲୁ ! ( ପହଲି ଗାଲ ଚିପିଧରି ) ଆଁ କର
କହୁଚି । ( ପହଲି ଆଁ କଲା ) ହୁଁ ! ରାକ୍ଷସ, ଆରଣା ପିଠା ପାଟିରେ
ପୂରେଇ କହୁଚି କଣ ନା ପିଆଜି । ( ପହଲିର କାନ ଧରି ) ଏ ପିଠା
କୋଉଠୁ ଆଣିଲୁ—କହ କୋଉଠୁ ଆଣିଲୁ ?
ପହଲି—ବୋଉଲେ, ଅପା ମୋତେ ମାରିପକେଇଲା ।
ମାଧୁରୀ—ମାରିପକେଇଲାଣି କୋଉଠି ? ତୋ' ଜିଭରେ ଅଳ ପିନ୍ କଣ୍ଟା
ଫୋଡ଼ିବି··· । ( କାନମୋଡ଼ି ) କହ, କୋଉଠୁ ଆଣିଲୁ !
ପହଲି—ବୋଉଲେ···ବୋଉ ! ( ମହାବୋଉ ଆସିଲେ )
ମହାବୋଉ—ଆଲୋ କାହିଁକି ଏମିତି ହଉଚି ? ଏ କ'ଣ ମାଧୁରୀ, କାହିଁକି ତାକୁ
ମାରୁଚୁ ? ( ପହଲିକି ଟାଣିଆଣି ) ଏଡ଼େବଡ଼ ଝିଅ ଆସି ହେଲୁଣି,
ସାନ ଭାଇମାନଙ୍କୁ ଟିକେ ଆଦର କରିବା ତ ହେଲାନି···ଖାଲି ମାଡ଼
ଦେଇ ଶିଖିଚି !

ମାୟା—ଆଦର କରିବି—ଏଇ ଚୋରଗୁଡ଼ାଙ୍କୁ ଆଦର କରିବି ?

ମହାବୋଉ—ଚୋର, ସିଏ ତୋ'ର କ'ଣ ଚୋରି କଲା ?

ମାୟା—ତାକୁ ପଚାରୁନୁ କ'ଣ ଚୋରି କରିଚି ? ···ତା' ଦେହରେ ହାତ ଦେଲେ ତ ତୋ' ଦେହରେ ଛୁଆଁ ଚାଲିଯାଉଛି । ଯେତେବେଳେ ପର ଘରେ ଚୋରି କରି ଯାଇ ଜେଲ୍‌ଖାନାରେ ଘଣା ପେଲିବ, ସେତେବେଳେ ?

ମହାବୋଉ—ଆଲୋ ପଚାରୁଚି ପରା କ'ଣ ଚୋରି କରିଚି ?

ମାୟା—ଭୋକ କଲେ କେତେବେଳେ ଖାଇବି ବୋଲି ଆରିଶା ପିଠାଟାଏ ମୋ ଆଲମିରା ଭିତରେ ରଖିଦେଇଥିଲି । ଏଇନେ ଦେଖିଲିବେଳକୁ ଏ ସିନ୍ଧିଆ ଚୋର ଆଲମିରା ଫିଟେଇ, ଟେବୁଲ୍ ଉପରେ ଚଢ଼ି ପିଠାଟାକୁ ଆଣି ଚଳୁ କରିଦେଲାଣି । ଟେବୁଲ୍ ଉପରେ ତ ପାଦଚିହ୍ନ ପଡ଼ିଚି—ଚୋର ଧରା ନ ପଡ଼ି ଯିବ କୁଆଡ଼େ··· ? ଉଁଃ, ଦେଖୁନୁ କେମିତି ଜୁଳୁ ଜୁଳୁ କରି ଅନେଇଚି, ଯେମିତି କିଛି ଜାଣେ ନାହିଁ ! ···ଦେବି ଧରି ଗୋଟାଏ ଚଟ୍‌କଣା ଯେ···

ମହାବୋଉ—ଆଲୋ ପିଠାଟା ତ ସିଏ ଖାଇ ଦେଲାଣି—ଘରେ ଆଉ ପିଠା ଅଛି ଖାଇବୁ ଯା ।

ମାୟା—ନା—ସେଇଟା ମୋ ପିଠା—କାହିଁକି ସେ ଚୋରି କଲା ?

ମହାବୋଉ—ତୁ ଆଉ ମୋତେ ଚୋରି କରୁନା ? ମୋ ହାତରେ ତ ଭଣ୍ଡାର-ଘର ଚାବି—ଏ ପିଠା ତତେ ଦେଲା କିଏ ? ତୁ ଆଣିଲୁ କେଉଁଠୁ ?

ମାୟା ହାତରେ ପଡ଼ିଲା, ଏଥର ରାସ୍ତା ଖୋଲିଗଲା । ଏଣିକି ଭଲ କରି ଚୋରି କର । ବୋଉ ମନ ତ ଖୁସି । ଚୋର ପୁଅଙ୍କ ମା' ନ ହେଇ, ଆଉ ଗୋଟାଏ କି ମା' ସେ ହେବ ?

ମହାବୋଉ—ହଉ, ହଉ ମୁଁ ପଛକେ ଚୋରର ମାଆ ହେଲି—ତୁ ଯା ।

ମାୟା—ଯିବି କୁଆଡ଼େ ? ମତେ ଖାଇବାକୁ ଦେ ।

ମହାବୋଉ—ଚାଲ୍, ପିଠା ଅଛି ଖାଇବାକୁ ଦେବି ।

ମାୟା—ନା—ମୁଁ ପିଠା ଖାଇବି ନାହିଁ—ମତେ ପଖାଳ ଦେ ।

ମହାବୋଉ—ଆଲେ ପଖାଳ ଆସିବ କୋଉଠୁ ? କୋଇଲା ଚୂଲାରେ ରନ୍ଧା ହେଲା ଦନୁ କ'ଣ ଆଉ ପଖାଳ ହଉଚ ?

ମାୟା—ମୁଁ ହେ ସବୁ ଜାଣିନ—ମତେ କେଉଁଠୁ ହେଲେ ପଖାଳ ମାଗି ଆଣି ଦେ ।

ମହାବୋଉ—(ହସିଉଠି) କୋଉଦନ ତୋର ଆଉ ବୁଦ୍ଧି ହବ ଲେ ମାୟା ! ଅଲେ ତୋ ପାଇଁ ମୁଁ ଏଇନେ କାହା ଘରକୁ ପଖାଳ ମାଗିବାକୁ ଯିବି !

ମାୟା—ଖାଇବି ତ ପଖାଳ ଖାଇବି, ନ ହେଲେ ଉପାସ ରହିବି ।

ମହାବୋଉ—ତୁ ଜିଦ୍ ଧରି ଉପାସ ରହିଲେ ମୋର ଆଉ ବଲ କ'ଣ ?

ମାୟା—ହଁ, ମୁଁ ଉପାସ ରହିବି । (ଗୃଲିଗଲା)

ପଦ୍ମଲ—ବୋଉ, ଦେଖିଲୁ ଅପା କମିତି ମୋ କାନମୂଳ ରଗଡ଼ି ଖଣ୍ଡିଆ କରି ଦେଇଚ ।

ମହାବୋଉ—ଦେଖି ଦେଖି ( ଦେଖିଲେ )···ଇସ୍, ମାୟାଟା ମଣିଷ ନୁହେଁ । ହଉ, ତୁ ଆ—ମୋ ପାଖରେ ଟିକେ ବସିବୁ ଆ ।

ପଦ୍ମଲ—( ପୁଣି ଭେଁ କରି କାନ୍ଦିଉଠିଲା )

ମହାବୋଉ—କିରେ କ'ଣ ହେଲା—ପୁଣି କାନ୍ଦିଲୁ କାହିଁକି ? ଆ—

ପଦ୍ମଲ—ଅପା ମତେ ଇମିତି ମାଇଲା—ତୁ ତାକୁ କିଛି କହିଲୁ ନାଇଁ କାହିଁକି ?

ମହାବୋଉ—କହିଲି ତ—ଆଉ କ'ଣ କହିଥାନ୍ତି ? ଆ—ମୋ ସୁନାଟା ପରି ।

ପଦ୍ମଲ—ନାଇଁ, ମୁଁ ଯିବି ନାଇଁ । ଏଇଠି ବସିବି—ବାପା ଆସିଲେ ତାଙ୍କୁ କହିବି ।

ମହାବୋଉ—ହଉ, କ'ଣ ବାପାଙ୍କ ଆଗରେ ଫେରାଦ ହବୁ ହୋ । ମୁଁ ଆଉ ପାରିବି ନାଇଁ ।

( ମହାବୋଉ ଗୃଲିଗଲେ । ପଦ୍ମଲ ପିଠା ଖାଉଥାଏ, ମଝିରେ ମଝିରେ ଉଁ ଉଁ ହୋଇ କାନ୍ଦୁଥାଏ । ଆସିଲା ପରୁ । )

ପରୁ—କିରେ ପଦ୍ମଲ—ଏଠି କ'ଣ କରୁଚୁ ?

ପଦ୍ମଲ—କାନ୍ଦୁଚି ।

ପଡୁ—କାନ୍ଦୁଚ୍ ନା ପିଠା ଖାଉଚୁ ?
ପହଲି—ଖାଇଲେ କ'ଣ ହେଲା—କାନ୍ଦୁଚି ତ !
ପଡୁ—ଖାଉଚୁ ଯଦି କାନ୍ଦୁଚୁ କାହିଁକି ?
ପହଲି—ଅପା ମାଇଲା !
ପଡୁ—ଓଃ, ଅପା ଯିମିତି ମୋତେ ମାରେନାଇଁ !
ପହଲି—ଇମିତି ମାରେ ? ଦେଖିଲୁ···
ପଡୁ—କାହିଁ—କୋଉଠି କ'ଣ ହେଇଚି ?
ପହଲି—ଏଇ କାନମୁଣ୍ଡା ପାଖରେ ଦେଖିଲୁ, ରକତ ବାହାରି ନାଇଁ ?
ପଡୁ—କୋଉଠି ଟିକିଏ ରକ୍ତ ବାହାରୁଥିଲା—କୁଆଡ଼େ ଶୁଖିଗଲାଣି । ଆଉ କିଛୁ ନାଇଁ ।
ପହଲି—(ପୁଣି କାନ୍ଦଉଠି) କିଛୁ ନାଇଁ ? ବାପାଙ୍କୁ ତାହାହେଲେ ଦେଖେଇବି କ'ଣ ?
ପଡୁ—ଓଃ, ତୁ ବାପାଙ୍କୁ ଦେଖେଇବୁ ବୋଲି ଏଠି ଠିଆହେଇଚୁ ?
ପହଲି—ହୁଁ !
ପଡୁ—ବୋକାଟା ! କାନମୁଣ୍ଡାରୁ ତ ରକ୍ତ ଶୁଖିଗଲାଣି—ଆଖିରୁ ତ ଲୁହ ଶୁଖିଗଲାଣି—ବାପାଙ୍କୁ ଆଉ ଦେଖେଇବୁ କ'ଣ ?
ପହଲି—ବାପା କ'ଣ ହେଲେ ଜଲଦି ଆସୁଚନ୍ତି ?
ପଡୁ—ତୁ ଗୋଟାଏ କାମ କର । ଦେଖି ତୋ ହାତ ଦେଖି । ହାଁ—ବେଶ୍—ମୁନଆଁ ମୁନଆଁ ନଖ ତ ହେଇଚି—ନଖରେ କାନମୂଳ ଘା'କୁ ଟିକିଏ ଖୋଳିଦେ ।
ପହଲି—କାଟିବ !
ପଡୁ—ବୋକାଟାଜରେ ? ନ କାଟିଲେ ଆଖିରୁ ଲୁହ ବାହାରିବ କିମିତି ? ଟିକିଏ ଜୋର୍‌ରେ ନଖ ମାରିଦେ ଯେ—ତେଣେ ରକ୍ତ ବାହାରିବ, ଏଣେ ଲୁହ ବାହାରିବ—ବୁଝିଲୁ ? ( ପଡୁ ଚାଲିଗଲା—ପହଲି କାନମୂଳକୁ ହାତ ନେଇ ଡରି ଡରି ଖୋଳୁଥାଏ, ଆଉ ଇଁ ଇଁ ହେଇ

କାନ୍ଦୁଥାଏ । ପୀତାମ୍ବର ବାହାରୁ ଆସିଲେ । ତାଙ୍କୁ ଦେଖି ପଦ୍ମଲ ଆହୁରି ଜୋର୍‌ରେ କାନ୍ଦଉଠିଲା । )

ପୀତାମ୍ବର—କିରେ ପଦ୍ମଲ, କଥା କଣ ? କାନ୍ଦୁଚୁ କାହିଁକି ?

ପଦ୍ମଲ—ଅପା ମତେ ମାଇଲା ।

ପୀତାମ୍ବର—ମାଇଲା ? ଆଚ୍ଛା, ଆଚ୍ଛା, ବୁଝିବା । କୁଆଡ଼େ ଗଲା ସେ ?

ପଦ୍ମଲ—ଡାକିଆଣିବି ?

ପୀତାମ୍ବର—ନାହିଁ ଏଇନେ ଥାଉ—ପରେ ସେ କଥା ବୁଝିବା !

ପଦ୍ମଲ—ନାହିଁ ବାପା, ଏଇନେ ବୁଝ । ହେଇ ଦେଖ, ମତେ ମାରି କେମିତି ସେ ଖଣ୍ଡିଆ କରିଦେଇଚି ।

ପୀତାମ୍ବର—ଖଣ୍ଡିଆ କରିଦେଇଚି—କାହିଁ ଦେଖି ? ଆହା ହା, ସତେ ତ ! ସେ ମାଲ୍ୟାଟା ଭାରି ଦୁଷ୍ଟ ହେଇଗଲାଣି । ଦୁ'ଜାଗା ଖଣ୍ଡିଆ କରି ଦେଇଚି !

ପଦ୍ମଲ—ଦୁ'ଟା ଖଣ୍ଡିଆ !!

ପୀତାମ୍ବର—ହୁଁ…ଆଚ୍ଛା ପଦ୍ମଲ,…ତୋର ଏ ଦୁ'ଟା ଖଣ୍ଡିଆ ପାଇଁ ଦୁ'ଅଣା ପଇସା ନେ, ଆଜି ସନ୍ଧ୍ୟାରେ ମୁଁ ମାଲ୍ୟାକଥା ବୁଝିବି—ହେଲା ତ ?

ପଦ୍ମଲ—( ଖୁସିହୋଇ ) ହଁ ।

ପୀତାମ୍ବର—ଆଚ୍ଛା—ଏବେ ଯା—ପୂଜାଙ୍କ ପାଖରେ ବସି ଗପ ଶୁଣିବୁ ଯା ।

( ପଦ୍ମଲ ଚାଲିଗଲା । ଅନ୍ୟ ଦିଗରୁ ହାତରେ ଖଣ୍ଡେ ଦୁ'ଖଣ୍ଡ ପଢ଼ାବହି ଧରି ମାଲ୍ୟା ଆସିଲା )

ପୀତାମ୍ବର—ମାଲ୍ୟା, ତୋ' ଟେଷ୍ଟ ପରୀକ୍ଷା କେବେ ?

ମାଲ୍ୟା—ଏଇ ସୋମବାର ଦିନ ଆରମ୍ଭ ହେବ ।

ପୀତାମ୍ବର—ସେଇଥିପାଇଁ ଆଜିକାଲି ଖୁବ୍ ଜୋର୍‌ସୋର୍‌ରେ ପଢ଼ାପଢ଼ି ଚାଲିଚି ପରା ?

ମାଲ୍ୟା—"ଆଜିକାଲି" ନୁହେଁ—ମୁଁ ସବୁଦିନେ ଏମିତି ପଢ଼େ ।

ପୀତାମ୍ବର—ପ୍ରି ଟେଷ୍ଟ ପରୀକ୍ଷାରେ ଫଳ କେମିତି ହେଇଚି ?

ମାଲ୍ୟା—ଫଳ ବାହାରିନି ।

ପୀତାମ୍ବର—ସୋମବାର ଟେଷ୍ଟ ପରୀକ୍ଷା ଆରମ୍ଭ ହେବ କହୁଚୁ, ଏ ଯାଏଁ ପ୍ରି-ଟେଷ୍ଟ ପରୀକ୍ଷା ଫଳ ବାହାରନାହିଁ ?

ମାୟା—ମୁଁ କ'ଣ ମିଛ କହୁଚ ?

ପୀତାମ୍ବର—ନାହିଁ—ନାହିଁ—ତୁ କାହିଁକି ମିଛ କହିବୁ କି ? ତୁ ମିଛ କହୁନୁ ଯେ—

ମାୟା—ହଉ ମ ବାପା, ଦୁ'ଜଣ ଏକ୍‌ଜାମିନର୍ ଛୁଟିରେ ଯାଇଚନ୍ତି ଯେ—ଫଳ ବାହାରିପାରିନ ।

ପୀତାମ୍ବର—ସେ ଦୁ'ଜଣ ତା'ହେଲେ ଏ ବର୍ଷ ଆଉ ଛୁଟିରୁ ଫେରୁନାହାନ୍ତି···ଆଚ୍ଛା ସେ ନ ଫେରନ୍ତୁ—ଫଳ ନ ବାହାରୁ—ତୁ ତ ପରୀକ୍ଷା ଦେଇଚୁ—ତୋ'ର ଆଶା କେମିତି ?

ମାୟା—ଆଶା ! ! ଘଣ୍ଟା ତ ଏଯାଏଁ ଆସିଲା ନାହିଁ । ଏଡ଼େ ଲମ୍ବା ଲମ୍ବା ପ୍ରଶ୍ନପତ୍ରରୁ ପଢ଼ିଥିଲି ଯେ ସମୟ ଜ୍ଞାନ ରହିଲା ନାହିଁ । ଏଇଥିରୁ ପରୀକ୍ଷା ଯା' ହେଲା ବୁଝୁ ଥିବ । ···ମୁଁ ଯାଉଚ ବାପା; ସେ ରାକ୍ଷସ ପଞ୍ଚାଟା ତେଣେ ହବୁବେଳେ ହୋ ହୋ ଘୋ ଘୋ ଲଗେଇଚନ୍ତି । ଏଣେ ଯାଉଚ କୋଉଠି ଟିକିଏ ନିରୋଳାରେ ବସି ପଢ଼ିବ । ( ଚାଲିଯାଉଥିଲା )

ପୀତାମ୍ବର—ଶୁଣ୍ ମାୟା ! ( ମାୟା ଅଟକିଲା ) ତୁ ପହିଲିକୁ ମାଇଲୁ କାହିଁକି ?

ମାୟା—ସେ କାହିଁକି ମୋ ପିଠା ଚୋରି କଲା ?

ପୀତାମ୍ବର—ଯା' ବୋଲି ତାକୁ ମାରିବୁ ? ବଡ଼ଭଉଣୀ ତୁ । ତାକୁ ବୁଝେଇ ଦେଇ ପାରିଲୁ ନାହିଁ ଯେ ମାଡ଼ଯାଏ କଥା ଗଲା ! ତା' ଦେହରୁ ପୁଣି ରକ୍ତ ବାହାରୁଚ । ( ମହାବୋଉ ଆସିଲେ )

ମହାବୋଉ—ମୁଁ କହୁଚ ପରା—ଏ ମାୟାଟା ଆଉ ମଣିଷ ହେଲା ନାହିଁ ।

ମାୟା—କ'ଣ କହିଲୁ ?

ମହାବୋଉ—କହିବ ଆଉ କ'ଣ ? ଯେମିତି ଉଦ୍ଦଣ୍ଡୀ ଢଙ୍ଗ ତୋ'ର ହେଲଣି, ତୁ ଆଉ ମଣିଷ ହବୁନାହିଁ ।

ମାୟା—ମଣିଷ ଆଉ ହେବ କମିତ ? ଟିକଏ କ'ଣ ଭଲ ଜିନଷ ଖାଇ ମଣିଷ ହବାକୁ ଗଲାବେଲକୁ, ସେତକ ତ ଅନ୍ୟମାନେ ମାରିପିଟି ଖାଇ ମଣିଷ ହେଇଯାଉଚନ୍ତି—ମୁଁ ଆଉ ମଣିଷ ହେବ କେମିତ ? (ଚାଲିଗଲା)

ମହାବୋଉ—ମତେ ରୁ ଆଚ୍ଛା ପାଠ ପଢ଼େଇଲୁ ଲୋ ଝିଅ···ଭଲ ପାଠ ପଢ଼େଇଲୁ ।

ପୀତାମ୍ବର—(ହୋ ହୋ ହେଇ ହସୁଥାନ୍ତି)

ମହାବୋଉ—ସେ ପାଗଲୀଟା କଥା ଶୁଣି ତମେ ହସୁଚ !

ପୀତାମ୍ବର—ପାଗଲୀ ତମେ କାହାକୁ କହୁଚ ମହାବୋଉ···ମାୟା ପରି ଝିଅ ଭାଗ୍ୟରେ ଥିଲେ ଜନ୍ମ ହୁଏ । ଦେଖୁଚ ତ ତା'ର ବୁଦ୍ଧି—ତା'ର କଥା !

ମହାବୋଉ—ତା'ହେଲେ ଏଇ ବୁଦ୍ଧି, ଏଇ କଥା ନେଇ ସେ ଘରସଂସାର କରିବ ?

ପୀତାମ୍ବର—ଦେଖ, ଏ ପ୍ରଶ୍ନ ତମେ ମତେ ପଚାର ନାହିଁ । ମୁଁ ତ ତମକୁ ଥରେ କହିଦେଇଚ···

ମହାବୋଉ—ମୁଁ ବି ତମକୁ ଥରେ କହିଦେଇଚି—ମହାକୁ ବାହା କର ଘରକୁ ବୋହୂ ନ ଆଣିଲେ ପୁଅ ଝିଅ ସମସ୍ତେ ଇମିତ ନିଜ ହାତରେ ନିଜେ ଚଉଦପା ହେଇ ବସିବେ । ଶେଷକୁ ଜୀବନସାରା ବସି ପସ୍ତାଉଥିବ ।

ପୀତାମ୍ବର—ତମର ବିଚାର ତା'ହେଲେ ହେଇଠି । ମୋହନ ବାହାହେଇ ବୋହୂ ଘରକୁ ଆସିଲେ, ତା' ମନ ଘର ଧରିବ । ଆଉ ମାୟା ମନ ଘରକରଣାରେ ଲାଗିବ—ଏଇଆ ତ ?

ମହାବୋଉ—ଏଇଟା ତ ଦୁନିଆର ନିତି—ଆଉ ମୋ ବିଚାର ତମ ବିଚାର କ'ଣ ? ···ହଉ ଆସ—ଲୁଗାପଟା ବଦଲାଇ ଗୋଡ଼ହାତ ଧୋଇବ ଆସ ।

ପୀତାମ୍ବର—ଶୁଣ ମହାବୋଉ, ମୋହନର ବାହାଘର ପ୍ରଶ୍ନ ତ ବର୍ତ୍ତମାନ ଉଠୁନି ।

ମହାବୋଉ—କ'ଣ କହୁଲ—ବାପା ହୋଇ ବି ତୁମେ ଏଇଆ କହିବ ? ଆଠ ଦିନ ହେଲାଣି, ନିଜ ହାତରେ ଗୋଟେପେଇ କରି ଖାଇ ତା'ର ଆସି କେମିତି କଣ୍ଠା ଦୋହଲିଲାଣି ଦେଖୁଚ ତ ?

ପୀତାମ୍ବର—ତା' ଅବଶ୍ୟ ଦେଖୁଚି—ହେଲେ ଏଥିରେ ତା'ର ଦୋଷଟା କୋଉଠି ତ ମୁଁ ଦେଖିପାରୁନି । ତୁମେ ତ ଘର ଚଳେଇ ପାରିବ ନାହିଁ ବୋଲି କହିଲ—ସିଏ ତା'ର ଷ୍ଟୋଭ କିଣିଆଣି ହାତରେ ରାନ୍ଧି ଖାଇଲା । ହାତରେ ରାନ୍ଧି ଖାଇଲେ ଫଳ ଯାହା ହୁଏ ।

ମହାବୋଉ—ଏଇଆ ତୁମେ ବୁଝିଲ ? କାହିଁକି ତାକୁ ମୁଁ ଏ କଥା କହିଥିଲି ? ଏମିତି ଗୃପା ପଡ଼ିଲେ କାଳେ ତା' ମନ ବଦଳିଯିବ—ଏଥିପାଇଁ ସିନା !

ପୀତାମ୍ବର—କିନ୍ତୁ ଏଥିରେ ତାର ମନ ବଦଳିବାର କୌଣସି ଲକ୍ଷଣ ମୁଁ ଦେଖୁନି । ବେଶ୍ ଆରାମରେ ସେ ଚଳିଯାଉଚି । ସକାଳୁ ଗୃଉଳ ଆଉ ମୁଗ ସାଙ୍ଗରେ ଗୋଟା ଗୋଟା ଆଳୁ, ବାଇଗଣ, ପୋଟଳ ପକେଇ ଷ୍ଟୋଭରେ ବସେଇଦେଇ ଯାଉଚି, ଉପର ବେଳାକୁ ଓଉଟିରୁ ଫେରି ମହାନନ୍ଦରେ ତାକୁ ଖାଉଚି । ଗୋଟାପକିବା ରନ୍ଧା ହଉଚି—ଭିଟାମିନ୍ ରତିଏ ବି ନଷ୍ଟ ହଉନି ।

ମହାବୋଉ—ମୁଁ ଜାଣେ ତମର ସେ ଭିଟାମିନ୍ କାଳଦମ୍ । ପଇସା ଲୋଭ ଦେଖେଇ ଛୁଆଗୁଡ଼ାଙ୍କୁ ସେ ଅଲଣା ଦାରସିଝା ଖେଚେଡ଼ି ଖାଇବାକୁ ଦଉଚ ଯେ···ମୁଁ ଜାଣିବାକୁ ତା' ମୁହଁରେ କିଛି ନ କହି ଏଣେ ଆସି ଥୁଥୁ କରି ବାନ୍ତି କରୁଚନ୍ତି । ···ଖାଲି ଖାଇ ହଉ ନାହିଁ ବୋଲି ବଜାରରୁ ଦିନକୁ ଦ'ଟିନିଟା ଆଗ୍ରର ଡବା କିଣାହେଇ ଆସୁଚି-- ଏଥିରେ ପଇସା ନଷ୍ଟ ତେଣେ ଦେହକୁ କ୍ଷତି । ଏଇଥିପାଇଁ ମୁଁ ଘର ଚଳେଇ ପାରିବ ନାହିଁ ବୋଲି ତାକୁ ହାତରେ ରାନ୍ଧିବାକୁ କହିଥିଲି !

ପୀତାମ୍ବର—ମୁଁ ଆଉ କ'ଣ କରିବି କହ ! ମୁଁ ତ ଥରକୁ ପାଞ୍ଚ ଥର ତାକୁ କହିଲି, ହେଲେ ତା'ର ସେଇ ଏକ କଥା—ବର୍ତ୍ତମାନ ବାହା ହବନାହିଁ ।

ମହାବୋଉ—ଏମିତି ଉପରଠାଉରିଆ କରି କହିଦେଲେ ଲାଭ କ'ଣ—ତାକୁ ଟିକେ ଭଲ କରି ବୁଝେଇ ସୁଝେଇ କୁହ । ମତେ ତ ଡର ମାଡ଼ୁଛି କାଳେ ଏଇ ଖିଆଲ ସବୁଦିନେ ତା' ମୁଣ୍ଡ ଭିତରେ ରହିଯିବ ।

ପୀତାମ୍ବର—ହୁଁ—ଏଇଥିପାଇଁ ତା'ହେଲେ ତମେ ଆଜି ଖାଇନ ?

ମହାବୋଉ—ଖାଇନ ? କିଏ କହିଲା ମୁଁ ଖାଇନ ! ତମେ ଆସିବଟି ।

ପୀତାମ୍ବର—ମୋ କଥା ଆଗେ ଶୁଣ ! ନିଜେ ତ ଉପବାସ, ମୋ ଚର୍ଚ୍ଚା ଆଉ କରିବ କ'ଣ ? ପୂର୍ବାଶ୍ରମ ଗୃହର ସମସ୍ତଙ୍କୁ ତାକିଦ୍ କରିଥିଲି, ତମ ଉପବାସ କଥା ଯେମିତି କେହି ନ ଜାଣନ୍ତି । ପୁଅଝିଅମାନେ ସିନା ଜାଣି ପାରିଲେ ନାହିଁ, ହେଲେ ପୂର୍ବାଶ୍ରମ ତ ମୋ ପାଖରେ ଏମିତି ଅକୃତଜ୍ଞ ହୋଇପାରିବନି ।

ମହାବୋଉ—କୁଆଡ଼େ ଗଲା ସେ ପୋଡ଼ାମୁହାଁ ?

ପୀତାମ୍ବର—ଫାଟକ ପାଖରେ ଜଗିବସିଥିଲା—ମୁଁ ଆସିବାକ୍ଷଣି ମତେ ଖବର ଦେଇଚି । ···ହୁଁ, କାହିଁକି ଖାଇନ ତମେ ?

ମହାବୋଉ—ଖାଇ ନାହିଁ କି ମହା ବାହାହବାକୁ ଗଜ ନ ହବାଯାଏ ମୁଁ ଖାଇବି ନାହିଁ ।

ପୀତାମ୍ବର—ଏ କି ପାଗଳାମି ତମର ମହାବୋଉ ?

ମହାବୋଉ—ସତ କହୁଚି, ମୁଁ ଆଉ ଏଗୁଡ଼ା ଦେଖି ସହି ପାରିବି ନାହିଁ । ସହିକେ ତ ଅଳେଡ଼ା ଅଧାର ମାଇପି ଜୀବନ ପାଇଚି—ତା' ଉପରେ ଯଦି ଏ ବୟସରେ ଏ ଭାଗ୍ୟ ହୋଇଗଲା···( କାନ୍ଦୁଥାନ୍ତି )

ମୋହନ—( ଭିତରୁ ) ଏ ପାଣି ବାଲଟି ନେଇ ତୁ ସିଆଡ଼େ ଯା' କହୁଚି ଭିକା ।

ଭିକା—(ଭିତରୁ) ମୁଁ କ'ଣ କରିବି ଆଜ୍ଞା—ମତେ ତ ମା' କହିଚନ୍ତି···

ମୋହନ—( ଭିତରୁ ) ମା' କହିଚନ୍ତି ! ଚାଲିଲୁ କେମିତି ମା' କହିଚନ୍ତି ଦେଖେଁ ! ( ଭିତରୁ ମୋହନ ଆସିଲା )

ମୋହନ—( ଏମାନଙ୍କୁ ଦେଖି ଟିକିଏ ଥମି ଯାଇ ) ··ଏଇ ତ ବୋଉ ବାପା ! ଆଚ୍ଛା ବାପା—ମୁଁ ଆଉ କ'ଣ ଏ ଘରେ ରହିବି ନାହିଁ ?

ପୀତାମ୍ବର—କାହିଁକି—କ'ଣ ହେଲା ?

ମୋହନ—ମୋ ଶୋଇଲା ଘରଠୁ ଆରମ୍ଭ କରି ଯଦି ବୈଠକଖାନା ସ୍ରେଗୀ ଦେଖିବା ଘରଯାଏ ଦିନକୁ ଦି'ଥର ଛୁ ଛୁ ପାଣି ଢାଳା ହୋଇ ଧୂଆ ହୁଏ—

ପୀତାମ୍ବର—ଦିନକୁ ଦି'ଥର ଘର ଧୂଆ ହଉଚି ? କାହିଁକି ?

ମୋହନ—ଖାଲି କ'ଣ ଘର ଚଟାଣ ? ଝରକା, କବାଟ, କାନ୍ଥ, ଆଲମିରା, ଚୌକି, ଟେବୁଲ, ସେଲଫ୍ କିଛି ବାଦ୍ ଯାଉନି । ଏ ଶୀତଦିନେ ମଣିଷ ସେ ଘରେ ଚଳିବ କେମିତି କହିଲ ?

ପୀତାମ୍ବର—କିରେ ଭିକା···

ଭିକା—ମୁଁ କଣ କରିବି ଆଜ୍ଞା, ମତେ ତ ମା ହୁକୁମ ଦେଇଚନ୍ତି ।

ପୀତାମ୍ବର—ମା' ହୁକୁମ ଦେଇଚନ୍ତି ?

ମହାଦେଇ—ହଁ, ମୁଁ ହୁକୁମ ଦେଇଚି । ତାର ସିନା ଜାତପତ କିଛି ନାହିଁ—ହେଲେ ମୋ ଘରେ ବାର ଓଷା, ତେର ପର୍ବ···ଠାକୁର ଦେବତା ମୋ ଘରେ ଅଛନ୍ତି—ଏଠି ଏ ଅନାଚାର ଚଳିପାରିବନାହିଁ ।

ପୀତାମ୍ବର—କି ଅନାଚାର ?

ମହାଦେଇ—ସିଏ ପଢ଼ୁଆ ପିଲାଙ୍କୁ ରୁଚୁନାହିଁ ବୋଲି ଦି'ଦିନ ହେଲା ହୋଟେଲରୁ ମାଂସ ତରକାରି କିଣାହୋଇ ଆସୁଚି । ସେଗୁଡ଼ାକ କି ମାଂସ ନାହିଁ କି ମାଂସ ।

ମୋହନ—କି ଆଶ୍ଚର୍ଯ୍ୟ କଥା—ହିନ୍ଦୁ ହୋଟେଲରୁ ମୁଁ ନିଜେ କୁକୁଡ଼ା ମାଂସ ତରକାରି ଆଣୁଚି ।

ମହାଦେଇ—କିଏ ଜାଣେ, ସେ କୁକୁଡ଼ା ମାଂସ କି କୁକୁର ମାଂସ ?

ମୋହନ—କୁକୁଡ଼ା ମାଂସରେ ବି ଭୁଲ୍ ହେଇଯିବ ? ସରୁ ସରୁ ହାଡ଼—

ମହାଦେଇ—ସବୁ ମାଉଁସରେ ସେମିତି ସରୁ ସରୁ ହାଡ଼ ଥାଏ । କୁକୁଡ଼ା ମାଂସ ଏବେ କୋଉ ଭଲ ?

ମୋହନ—ହେଲା ଏବେ, ମୁଁ ତୋ'ର କଥା ମାନିଲି—ମାଂସ ଖାଇବି ନାହିଁ ।

ହେଲେ ଯୋଉଠି ବସି ମାଂସ ଖିଆ ହଉଥିଲା···ସେ ଜାଗାଟା ଧୂଆ

ହଉ, ମୋର ଅପତ୍ତି ନାହିଁ । ···ଇଞ୍ଜୁଯାକ ଘର ଧୋଇଲେ ମୁଁ ଏଣେ ବସି ରୋଗୀ ଦେଖିବ କୋଉଠି ? ସବୁ ଘର ଧୋଇବା ଦରକାର ବା କ'ଣ ? ମାଂସର ତ ହାତ ଗୋଡ଼ ନାହିଁ ଯେ ଗୃହାଆଡ଼େ ବୁଲି ଅପବିତ୍ର କରିଦେଉଚି ।

ମହାବୋଉ—ମାଂସର ତ ହାତଗୋଡ଼ ନାହିଁ, ହେଲେ ମାଂସ ଯିଏ ଖାଉଚନ୍ତି ତାଙ୍କର ତ ହାତ ଗୋଡ଼ ଅଛି । ···ତମ ଗୁଣ୍ଡେବନ୍ତ କୁକୁରଙ୍କର ତ ହାତ ଗୋଡ଼ ଅଛି । ଏଇନେ ପାଟିରେ ଏତେ ହାଡ଼ ଧରି ମୋ ଠାକୁରଘର ଆଡ଼କୁ ମାଡ଼ିଯାଉଥିଲା ।

ପୀତାମ୍ବର—ମହାବୋଉ ।

ମହାବୋଉ—ମୁଁ ତମକୁ କହୁଚି—ମୁଁ ଆଉ ଏ ଘରେ ଏସବୁ ଦେଖି ସହି ପାରିବି ନାହିଁ । (କାନ୍ଦିଲେ)

ମୋହନ—ଏ କ'ଣ ? ବୋଉ ତୁ କାନ୍ଦୁଚୁ କାହିଁକି ?

ପୀତାମ୍ବର—ତୋ'ର ପାଇଁ । ତୋ'ର ପାଇଁ ସେ ଆଜି ଉପାସ ରହିଚି—ଏଯାଏଁ ଖାଇନି ।

ମୋହନ—ଖାଇନି !! ମୋ ପାଇଁ କାହିଁକି ଖାଇନି ?

ପୀତାମ୍ବର—ତୁ ବୁଝି ପାରୁନୁ ଯେ ପୁଣି ପଚାରୁଚୁ ?

ମୋହନ—ହୁଁ !

ପୀତାମ୍ବର—କଥାଟାକୁ ଆଉ ଏମିତି ଏଡ଼େଇଦେଇ ଚାଲିବା ତୋ'ର ଉଚିତ ହଉନି ମୋହନ···ଭଲ ବି ହଉନି । ମୁଁ ମଧ୍ୟ ଖୁବ୍ ଭାବିଚନ୍ତି ଦେଖିଲିଣି··· ତୋ'ର ଏଣିକି ବିବାହ କରିବା ଉଚିତ । ଏଇ କଥାରୁ ଘରେ ଅଶାନ୍ତି ବଢ଼ି ଚାଲିଚି । ଆଉ ଖାସ ଏଇଥିପାଇଁ ଆଜି ତୋ ବୋଉ ଉପାସ ରହିଚି—କାନ୍ଦୁଚି । ପୁଅ ଝିଅ ହେଇ ମା' ବାପା ମନରେ ଏମିତି କଷ୍ଟ ଦେବା କ'ଣ ତମେ ସବୁ ଭଲ ମନେ କରୁଚ ?

ମୋହନ—ବେଶ୍ !

ପୀତାମ୍ବର—କ'ଣ ବେଶ୍ ?

ମୋହନ—ମୁଁ ବିବାହ କରିବାକୁ ରାଜି । ଚାଲ୍ ବୋଉ, ଖାଇବୁ ଚାଲ୍ ?

ମହାବୋଉ—ନାଇଁ, ଖାଲି ମୁହଁରେ କହିଲେ ମୁଁ ମାନିବି ନାଇଁ, ମୋ ଦେହ ଛୁଇଁ କହ ।

ମୋହନ—(ହସି ପକେଇ) ଆଚ୍ଛା, ହେଲା ଏବେ ତୋ' ଦେହ ଛୁଇଁ କହୁଚି, ମୁଁ ରାଜି । ଚାଲ୍—ଖାଇବୁ ଚାଲ୍ ।

ମହାବୋଉ—ହେ ମା' କଟକ ଚଣ୍ଡୀ, ହେ ମା କାଳୀ, ହେ ପ୍ରଭୁ ଗୋପାଳଜୀ, ଏଇ ବଇଶାଖରେ ଯେମିତି ହେଇଯାଉ । (ମୋହନକୁ) ଚାଲ୍ ! ମୋ ସାଙ୍ଗରେ ଆଜି ଖାଇବୁ ଚାଲ୍ ! ···ମାଆ୍ଚା କୁଆଡ଼େ ଗଲା ? ଆଲୋ ମାଆ୍ଚା···ଭାଇ ସାଙ୍ଗରେ ଖାଇବୁ ଆ (ପୀତାମ୍ବରଙ୍କୁ) ତମେ ବି ଲୁଗାପଟା ବଦଳି ଆସ ।

# ତୃତୀୟ ଦୃଶ୍ୟ

( ପ୍ରଥମ ଦୃଶ୍ୟର ସେଇ କକ୍ଷ । ସମୟ ପ୍ରଭାତ । ଗୋଟାଏ ଗୋଡ଼ରେ ପଟେ ଯୋତା ପିନ୍ଧି ଆଉ ପଟେଟାକୁ ହାତରେ ଧରି ଆସିଲା ମୋହନ । ପଛେ ପଛେ ତିନୋଟିଯାକ ସାନ ଭାଇ )

ମୋହନ—କୁହ । ତମ ଭିତରୁ ଯିଏ କହିଦେବ, ଯିଏ ପଇସା ପାଇବ, କୁହ ।

ପଦ୍ମ—ତୁ ଜାଣିଚୁ ପହଲି ?

ପହଲି—ନା—ମୁଁ ଜାଣିନି ! ରଞ୍ଜନ ଭାଇ, ତୁ ଜାଣିଚୁ ?

ରଞ୍ଜନ—ମୁଁ କିଛୁ ଜାଣିନି—

ମୋହନ—କେହି କିଛୁ ଜାଣିନ ତ, ଯାଅ—ପଇସା ମିଳିବ ନାଇଁ ।

ପହଲି—ତମେ ଆମକୁ ଠକୁଚ ।

ମୋହନ—ଠକୁଚି ?

ରଞ୍ଜନ—ଖେଚେଡ଼ି ଆଉ ରାନ୍ଧିଲ ନାହିଁ କି ପଇସା ଆମକୁ ଦେଲ ନାହିଁ ।
ପରୁ—ସେ ଯୋଉ ଅସନା ଖେଚେଡ଼ି, ପଇସା ଲୋଭରେ ଆମେ ତାକୁ ଖାଉଥିଲୁ ।
ମୋହନ—କ'ଣ ? ଖେଚେଡ଼ି ଭଲ ହଉ ନଥିଲା ?
ପରୁ—ଭଲ ନା ଆଉ କ'ଣ ? ପଇସା ଦେଇ ଆମକୁ ଶିଖାଉଥିଲ ବୋଲି ବୋଉ ପଚାରିଲେ ମିଛରେ ଆମେ କହୁ—ଭାରି ବଢ଼ିଆ ହେଇଚି ।...
ମୋହନ—ତମକୁ ପଇସା ଦେବ ବୋଲି କ'ଣ ମୁଁ ପୁଣି ହେଇ ଅସନା ଖେଚେଡ଼ି ରାନ୍ଧି, ଖାଇ ନପାରି ଅଧା ଉପାସ ରହି, ହୋଟେଲ ଖାନା ଖାଇବି ।
ପହଲ—ତମେ ଆଉ ନ ରାନ୍ଧିଲେ ନାହିଁ—ଆମକୁ ପଇସା ଦିଅ । ତମକୁ ନିଦରୁ ଉଠେଇଦ୍‌ବୁ !
ମୋହନ—ଓ, ନିଦରୁ ଉଠେଇବ ! ଆଚ୍ଛା, ତମ ଭିତରୁ କିଏ ମତେ ଆଗେ ଉଠେଇବ ?
ସମସ୍ତେ—ମୁଁ...
ମୋହନ—ସମସ୍ତେ ଏକାବେଳକେ ?
ପରୁ—ମୁଁ ଭୋର ପାଞ୍ଚଟାରେ ଉଠେଇବି ।
ରଞ୍ଜନ—ମୁଁ ଆଉରି ଆଗରୁ ଉଠେଇବି—
ପହଲ—ମୁଁ ଅଧରାତିରେ ଉଠେଇବି, ବୋଉ ଯେତେବେଳେ ନିଦରୁ ଉଠିଥିବ ।
ପରୁ—ଚୁପ୍ ! ଅଧରାତିରୁ କିଏ କ'ଣ କାହାକୁ ଉଠାଏ ?
ପହଲ—ମୁଁ ଉଠେଇବି । ଚାଲ ବୋଉକୁ ପଚାରିବା ।
ପରୁ—ସେମିତି ହେଲେ, ଭାଇ ଶୋଇଥା'ନ୍ତୁ କି ନ ଥା'ନ୍ତୁ, ମୁଁ ଆଜି ରାତି ନ'ଟା ବେଳୁ ଉଠେଇ ଦେବି !
ପହଲ—ମତେ ଆସେ ନାହିଁକି ? ...ଏଇ ଦେଖ୍ ( ମୋହନକୁ ହଲେଇ ଦେଇ ) ଭାଇ ଉଠ !

ମୋହନ—ଏଁ !

ପହଲ—ମୁଁ ତମଙ୍କୁ ଆଗ ଉଠେଇ ଦେଲି । କାଲି ସକାଳେ ମତେ ପଇସା ଦବ ।

ରଞ୍ଜନ—ସେମିତି ହେଲେ ଭାଇ, ମୁଁ ତମକୁ ଦି'ଦିନ ଆଗରୁ ଉଠେଇ ଦେବି ।

ମୋହନ—ବୁଝିଲେ ବାବୁମାନେ··ଘେରରୁ ଟିକିଏ ନିଦ ଭାଙ୍ଗିବା ଦରକାର ବୋଲି ତମମାନଙ୍କୁ ପଇସା ଲୋଭ ଦେଖେଇ ଏ ବ୍ୟବସ୍ଥା କରିଥିଲି । କିନ୍ତୁ ତମେମାନେ ଯୋଉ ଓଲଟା ବ୍ୟବସ୍ଥା କଲଣି, ମୁଁ ତ ଆଦୌ ଶୋଇ ପାରିବି ନାହିଁ, ଆଉ ଉଠିବି କ'ଣ ? ମୋର ଦର୍କାର ନାହିଁ ବାବା—ତମେ ଯାଅ ।

ପଚୁ—ତମର ଭାଇ ଦରକାର ଥାଉ କି ନଥାଉ, ତମେ ଆମକୁ ପଇସା ନ ଦେବାଯାଏ ଆମେ ତମଙ୍କୁ ଉଠଉଥିବୁ ।

ମୋହନ—ନିଅ ବାବା ନିଅ ସମସ୍ତେ ଦି' ଦି' ଅଣା—ଆଉ ମତେ ନିଦରୁ ଉଠେଇବା ନାଁ ଧରିବ ନାହିଁ ।—ଯାଅ ।

ପହଲ—ହେଇରେ ପଚୁଭାଇ, ପୋନ୍‌ପାମିଡ଼ି ଯାଉଚି (ଡାକିଲା) ହେ ପୋନ୍‌ପାମିଡ଼ି···

( ସମସ୍ତେ ଡାକି ଡାକି ଚାଲିଗଲେ । ମାଯ୍ଯା ଆସିଲା )

ମାଯ୍ଯା—ତମେ କ'ଣ ଆଜି ଏତିକିବେଳୁ ଡାକ୍ତରଖାନା ବାହାରିଲଣି ଭାଇ ?

ମୋହନ—ନା—ଏଇ ପାଖକୁ ଗୋଟାଏ ରୋଗୀ ଦେଖି ଯାଉଚି ··କିନ୍ତୁ ମାଯ୍ଯା ଦେଖିଲୁ, ଏ ଜୋତାରେ ଫିତା ବଦଳରେ ଏଇଟା କ'ଣ ଲଗିଚି ।

ମାଯ୍ଯା—କ'ଣ ?

ମୋହନ—ଏଇଟା ତୋ'ର ଗୋଟାଏ ଚୁଣ୍ଡା ରିବନ୍ ନା ?

ମାଯ୍ଯା—କେଜାଣି, ହେଇଥିବ ।

ମୋହନ—ତୁ କିଛୁ ଜାଣିନୁ ?

ମାଧୁ—ଏ ଛୁଣ୍ଡା ରିବନ୍ କଥା ମୁଁ କିଛି ଜାଣିନି । ତମେ ପରା ନୂଆ ରିବନ୍ ଗୁଡ଼ାଏ ଆଣିଦେବ ବୋଲି ମୁଁ ଦ'ଦିନ ହେଲା କହିଲିଣି ।

ମୋହନ—ତୋ ରିବନ୍ ଆସିନାହିଁ ବୋଲି ମୋ ନୂଆ ଜୋତାର ଫିତାଟା କୁଆଡ଼େ ଉଠେଇ ଯାଇ ତା' ଜାଗାରେ ଗୋଟାଏ ଛୁଣ୍ଡା ମୁଣ୍ଡବନ୍ଧା ରିବନ୍ ଆସି ଲଗିବ ?

ମାଧୁ—ତମେ ତ ସକାଳୁ ଉଠି ସେ ରାକ୍ଷସ ଜନ୍ତାଟାଙ୍କୁ ପଇଧା ବାଣ୍ଡିବାରେ ଲାଗିଚ । ସତେ ଏ କଥା କହି ଲାଭ କ'ଣ ? ରିବନ୍ ଆଣିଦେଲ ନାହିଁ ବୋଲି ତମ ଜୋତା ଫିତା କ'ଣ ମୁଁ ମୋ ମୁଣ୍ଡ ବାନ୍ଧିବାକୁ ନେଇଚି ବୋଲି କହୁଚ ?

ମୋହନ—କହ ଭଲ, ମୋ ଫିତା କାହିଁ ?

ମାଧୁ—ତମେ କୁହ ମୋ ରିବନ୍ କାହିଁ ?

ମୋହନ—ରିବନ୍ କାଲିଠୁ ଆସି ତୋ ଡ୍ରେସିଂ ଟେବୁଲ ଡ୍ରୁ ଭିତରେ ଅଛି ।

ମାଧୁ—ସତେ ?

ମୋହନ—ହଁ ଯା, ଦେଖିବୁ ଯା...(ମାଧୁ ଚାଲିଯାଉଥିଲା) ଆରେ ମାଧୁ, ଚାଲିଯାଉଛୁ ଯେ ? କହିଯା ଫିତାଟା କାହିଁ ।

ମାଧୁ—(ଯାଉ ଯାଉ) ଭଲକରି ଦେଖ ଭାଇ, ସେଇ ଜୋତା ଭିତରେ ଅଛି । (ଚାଲିଗଲା)

ମୋହନ—ଜୋତା ଭିତରେ !! ( ବାହାର କରି ) ଆଚ୍ଛା, ରହ ମୁଁ ଆଜି ତୋତେ ଦେଖୁଚି । ( ମୋହନ ବାହାରିଗଲା । ଟିକିଏ ପରେ ହାତରେ ଗୋଟିଏ ଝିଅର ଫଟୋ ଧରି ମହବୋଉ ଆସିଲେ )

ମହବୋଉ—କୁଆଡ଼େ ଗଲା କି ? ମଲା, ଏଇନେ ଏଠି ବସି ଖବରକାଗଜ ପଢ଼ୁଥିଲେ, କୁଆଡ଼େ ପୁଣି ଉଠିଗଲେ, ଆଲୋ ମାଧୁ, ତୋ ବାପା କୁଆଡ଼େ ଗଲେ କି ?

ପୀତାମ୍ବର—(ଖବରକାଗଜ ପଢ଼ୁ ପଢ଼ୁ ଆସିଲେ) କଣ କହୁଚ ?

ମହାବୋଉ—ଏଇ ନିଅ, ଦେଖ । (ଫଟୋଟା ଦେଲେ)
ପୀତାମ୍ବର—ଏଁ, କାହା ଫଟୋ ଇଏ ?
ମହାବୋଉ—ମୁଁ କ'ଣ ଜାଣିନାହିଁ ତମ ଢଙ୍ଗ ? ତମକୁ ନେଇ କିଛି କରି ହବ ନାହିଁ ପରି । କାହା ଫଟୋ ତମ ଘରକୁ ଆସିବାର ଥିଲି ?
ପୀତାମ୍ବର—ଓ, ବୁଝିଲି ।
ମହାବୋଉ—ଖାଲି ବୁଝିକରି ରୁନି ରହିଲେ ତ ଚଳିବ ନାହିଁ ! ବାହାଘର ଆଉ କେଇଦିନ ରହିଲି ।
ପୀତାମ୍ବର—ବାହାଘର ! !
ମହାବୋଉ—ସେ ଦିନ ବାହାଘର ନାଁ ଶୁଣି ପୁଅଙ୍କ ଆଖି ତାଳୁରେ ଖୋସି ହେଇଯାଉଥିଲା, ଆଜି କ'ଣ ବାପା ଚମକି ପଡ଼ୁଛନ୍ତି । ମତେ କ'ଣ ତମେ ଏ ଘରେ ରଖେଇଦେବ ନାହିଁକି ? ମୁଁ ଭଲଲୋକରେ କାଇଲି ହେବି ?
ପୀତାମ୍ବର—ଆରେ ପ୍ରସ୍ତାବ ତ ଏଇମାତ୍ର ଆସୁଛି । ଏଥିରେ କାଇଲି ଅକାଇଲିର କଥା ରହିଲା କୋଉଠି ?
ମହାବୋଉ—ପ୍ରସ୍ତାବ ଆସୁଛି କ'ଣ ? ମୁଁ ତ ଝିଅକୁ ଦେଖିଛି—ତାଙ୍କ ଘର ଭଲମନ୍ଦ ଝରୁ ଜାଣିଛି—ଶୁଣିଛି । ତାଙ୍କ ତରଫରୁ ଫଟୋ ପଠେଇଲେଣି । ଆଉ ପ୍ରସ୍ତାବ ଆସୁଛି ପୁଣି କ'ଣ ?
ପୀତାମ୍ବର—ପୁଅ ବାହା କରିବ ବୋଲି କ'ଣ ପୁଅକୁ ବି ଏକାବେଳକେ ଭୁଲିଯିବ ମହାବୋଉ ? ମୋହନର ମତାମତ ନବ ନାହିଁ ?
ମହାବୋଉ—...ସିଏ ପରି ହବୁବେଲେ କହି ଆସୁଛି, ଆମ ମତରେ ତା ମତ—
ପୀତାମ୍ବର—ଆମ ମତ ମାନେ ? ତମ ମତ ଆଉ ମୋ ମତ ତ ?
ମହାବୋଉ—ହଁ ।
ପୀତାମ୍ବର—ତମେ ତ ବାହାଘର ତଥି ଠିକ୍ କରି ବସିଲଣି । ତମ କଥା ଛାଡ଼; କିନ୍ତୁ ମୋ ମତ ?

ମହାବୋଉ—ହାତରେ ତ ଫଟୋଟା ଧରଚ, ପସନ୍ଦ ହେଉଚ କି ନାହିଁ କହୁନ ? ହେଇଚ, ଏ ଆଖି ଯାହାକୁ ବାଛୁଚ, ଏ ମନ ଯୋଉଠି ମାନଚ, ତା'କୁ ଆଉ ନାହିଁ ବୋଲି କିଏ କହିବ କି ? ବର ଡାକ୍ତରକୁ କନ୍ୟା ବି. ଏ. ପାସ୍ । ରୂପ ତ ଦେଖିଚ, ଗୁଣ ତ ଶୁଣିଚ, ଆଉ ବାଛିବାକୁ ରହିଲ କ'ଣ ଯେ ବାଛୁଚ ? ( ଫଟୋଟା ଆଣି ) ଦିଅ— ଦିଅ—ଆଜି ବାହାଘର ଦିନ ଠିକଣା କରି ତାଙ୍କ ପାଖକୁ ଚିଠି ଲେଖିଦିଅ ।

ପୀତାମ୍ବର—ମତେ କ'ଣ ତମେ ଯାରୁ ପଚରା କରି ପାଇଚ କି ମହାବୋଉ ?

ମହାବୋଉ—ମୁଁ ତମ ସାଙ୍ଗରେ ଏତେ ଜବାବସୂଆଲ କରିପାରିବ ନାହିଁ ? ଚିଠି ଲେଖିବ କି ନାହିଁ କହିବଟି ?

ପୀତାମ୍ବର—ଏ କନ୍ୟା ବଛାବଛି ପରୀକ୍ଷାରେ ମାମ୍ବୁ ହଉଚ ମୋ ପ୍ରତିନିଧି । ତା'ର ପସନ୍ଦରେ ମୋର ପସନ୍ଦ । ମାମ୍ବୁକୁ ଏ ଫଟୋ ଦେଖାଅ ।

ମହାବୋଉ—ମୁଁ ଯିବ କୁଆଡ଼େ ଲୋ ମା—ମାମ୍ବୁ ଗୋଟାଏ ଝିଅ, ତା'ର ପୁଣି ଗୋଟାଏ ପସନ୍ଦ ! ପରୀକ୍ଷା ପାସ୍ ଖବର ଯୋଉଦିନ ବାହାରିଲି, ସେଦିନ କଥାରେ କଥାରେ ତା ବାହାଘର କଥା ଉଠେଇଲି ଯେ— ଓଲଟି ଝାଡ଼ ଝିଙ୍କାରି ଉଠି କହିଲା—ବାହା ହେବ ନାହିଁ । (ପୀତାମ୍ବର ହସି ଚାଲିଗଲେ) ହେଇଟି, ହସି ହସି ଚାଲିଯାଉଚ କ'ଣ ? ଆଜି ଜବାବ ପକ୍କା କରି ଚିଠି ଲେଖିଦିଅ । ମାମ୍ବୁ—ମାମ୍ବୁ···

ମାମ୍ବୁ—(ଉପରୁ) କ'ଣ ବୋଉ ?

ମହାବୋଉ—ଗୋଟିଏ ଚିଜ ଦେଖି ଯା ।

ମାମ୍ବୁ—(ଓହ୍ଲାଇ ଆସୁ ଆସୁ) ଚିଜ ? ଦେଖି, ଦେଖି, କି ଚିଜ ? (ଫଟୋ ଝାମ୍ପି ନେଇ) ଏ କାହା ଫଟୋ ବୋଉ···ଡାକ୍ତର ?

ମହାବୋଉ—ହଁ, ମନ ମାନୁଚ ?

ମାମ୍ବୁ—ଫଟୋଟା ଦେଖି ଏନେ ବଡ଼ କଥାଟାଏ କହିବ ? ଆଚ୍ଛା— ଚେଷ୍ଟା କରେ (ଫଟୋ ଦେଖି) ହଁ, ଏକାବେଳକେ ସାଧାସିଧା ଫଟୋଟା

ମାନେ ଫଟୋରେ କୌଣସି କାରସାଦ ନାହିଁ—ମାନେ ଫଟୋ ଅପେକ୍ଷା ପ୍ରକୃତ ଚେହେରା ହୁଏତ ଆହୁରି ଭଲ ।

ମଝିବୋଉ—ହଁ ସତ ଲୋ ! ଏଇ ଛ'ମାସ ତଳେ ମୁଁ ଦେଖିଥିଲି—ସବୁବୋଉ ଘରକୁ ତାଙ୍କର ମାଆ ବୁଲି ଆଇଥିଲେ ।

ମାଷ୍ଟା—ବେଶ୍ । ଗୋଟାଏ ଦିଗରୁ ନିରାପଦ ! ତା'ପରେ ଭଦ୍ରମହିଳା ବି. ଏ. ପାସ୍ କରିଛନ୍ତି···ନାହିଁ, ସେ ଗନ୍ଧ ତ ମୁହଁରେ ନାହିଁ !

ମଝିବୋଉ—ମୋତେ ନାହିଁ ନା । ଆଉ ଆଜି ପାଟେଇ ଝିଅଙ୍କ ପରି ଫରଫର ନୁହେଁ । ସବୁ ବଦ୍ୟା ଗୁମରରେ ।

ମାଷ୍ଟା—ଆଚ୍ଛା, ଭଇ ଦେଖି ନାହାନ୍ତି ତ ?

ମଝିବୋଉ—ନା—(ଡାକିଲେ) ଆରେ ମଝି !

ମାଷ୍ଟା—ରହ ବୋଉ । ଆଉ ଗୋଟିଏ କଥା ଦେଖେଁ । ହୁଁ···ଉପରେ ତ ଦେଖିବାକୁ ଖୁବ୍ ସରଳିଆ । ନମ୍ରହା । ଭିତରଟା ?

ମଝିବୋଉ—ଠିକ୍ ସେମିତ ।

ମାଷ୍ଟା—ତା'ହେଲେ ମିସ୍ ମାଷ୍ଟାରଣୀ ଦାସଙ୍କର [illegible] ନୂଆବୋଉ ରୂପେ ଗ୍ରହଣ କରିନେବାରେ ଆପତ୍ତି ନାହିଁ ।

ମଝିବୋଉ—ତତେ ଆଉ କ'ଣ କହାନ୍ତି ?

ମାଷ୍ଟା—ତୋ ବୋହୂ ନାଁ କ'ଣଟି ବୋଉ ?

ମଝିବୋଉ—କାବେରୀ ।

ମାଷ୍ଟା—କାବେରୀ ! ବାଃ ! କି ବଢ଼ିଆ ନାଁ ହୋଇଛି । ସତେ ବୋଉ, ଭରି ସୁନ୍ଦର ନାଁଟି—କାବେରୀ ! କାବେରୀ !

ମଝିବୋଉ—(ଡାକିଲେ) ଆରେ ମଝି, ମଝି···

ମାଷ୍ଟା—ଭଇଙ୍କୁ ଏ ଫଟୋ ଦେଖେଇବୁ ବୋଲି ଡାକୁଚୁ ତ ?

ମଝିବୋଉ—ହଁ ।

ମାଷ୍ଟା—ତା'ହେଲେ ବୋଉ, ଏ କାମଟା ତୁ ମୋ ହାତରେ ଛାଡ଼ିଦେଇ ଏଠୁ ଯା—

ମହାବୋଉ—ନାଇଁ—ନାଇଁ—ତୁ ତା'କୁ କ'ଣ ନାଇଁ କ'ଣ କହୁଚୁ ।
ମାଷ୍ଟା—ତତେ ମୋ ରାଣ ବୋଉ, ଭାଇଙ୍କି ଡାକିଦେଇ ତୁ ଏଠୁ ଯା—
ମହାବୋଉ—ଆରେ ମହା—ମହା—
ମୋହନ—(ବାହାରୁ) କ'ଣ ବୋଉ ?
ମହାବୋଉ—ଏଣେ ଟିକିଏ ଆସିଲୁ ।
ମୋହନ—(ବାହାରୁ) ଯାଉଚି ।
ମାଷ୍ଟା—ବେଶ୍, ତୁ ଏଥର ଯା—
ମହାବୋଉ—ହେଇଛି ମାଷ୍ଟା—
ମାଷ୍ଟା—ତୁ ଯା' ନା ଆଗେ—ଯାଇ ସେ ପାଖରେ ଠିଆ ହୋଇ ଦେଖ—କ'ଣ ହଉଚି । ( ମହାବୋଉ ଚାଲିଗଲେ । ମାଷ୍ଟା ଫଟୋଟି ଆଖି ପଡ଼ିଲାଭଳି ଗୋଟିଏ ସ୍ଥାନରେ ରଖିଦେଇ ଚେୟାର ଉପରେ ବସି ଖଣ୍ଡେ ବହି ପଢ଼ି ବସିଲା । ଆସିଲା ମୋହନ । )
ମୋହନ—ବୋଉ । ( ବୋଉକୁ ନ ଦେଖି ) ବୋଉ କୁଆଡ଼େ ଗଲା ମାଷ୍ଟା ? ( ମାଷ୍ଟା ଖୁବ୍ ମନୋଯୋଗ ଦେଇ ପଢ଼ିବାର ଛଳନା କରୁଥାଏ !
ମୋହନ—ମାଷ୍ଟା । )
ମାଷ୍ଟା—ଏଁ !
ମୋହନ—ବୋଉ କୁଆଡ଼େ ଗଲା ?
ମାଷ୍ଟା—ମୁଁ ଦେଖିନି ତ ।
ମୋହନ—ଏ କି ବହି ପଢ଼ା ହଉଚି ।
ମାଷ୍ଟା—ଯୋଉ ବହି ବାପାଭାଇଙ୍କର ଅତ୍ୟାଗ୍ରହର ତରରେ ଲୁଚେଇ ଲୁଚେଇ ପଢ଼ା ହଉଥିଲା ସେଇ ବହି—ଜେଜେମାଙ୍କ କାହାଣୀ ।
ମୋହନ—ପାଣ୍ଡିତ୍ୟ ହେଇଯାଇଚି ବୋଲି ଭାରି ଦମ୍ଭରେ ତ କଥା କୁହା ହଉଚି ।
ମାଷ୍ଟା—କି ନିଷ୍ଠୁର ମ ତମେ ଭାଇ ? ତମ ବାହାଘର କଥା ଉଠିଲା ଦିନୁ, ମୁଁ ସନ୍ଧ୍ୟା-ସକାଳେ ଠାକୁରଙ୍କୁ ଡାକୁଚି, କେମିତି ଚଞ୍ଚଳ ତମ ବାହାଘରଟା

ହୋଇଯାଉ । ···ଆଉ ତମେ କ'ଣ ଠିକ୍ ମୋ ସାଙ୍ଗରେ କମ୍ପିଟିସନ୍ କର ଦ'ବେଳା ଠାକୁରଙ୍କୁ ଡାକୁଥିଲ ଯେ ମାଯ୍ନା କେମିତି ଫେଲ୍ ହୋଇଯାଉ ?

ମୋହନ—ଓଃ ! କଥାରେ କି ଛଟକ !···ବୋଉ କୁଆଡ଼େ ଗଲା ?

ମାଯ୍ନା—ଯଥା ସ୍ଥାନରେ ଥିବ—ଦେଖିବ ଯାଅ—(ମୋହନ ଘର ଭିତରକୁ ଆଗେଇଲା । ମାଯ୍ନା ମୋହନକୁ ପଛ କରି ପଢ଼ି ବସିଲା···ମୋହନ ଯାଉ ଯାଉ ଫଟୋ ଖଣ୍ଡିକ ତା ଆଖିରେ ପଡ଼ିଲା । ପାଦେ ଯାଇ ପୁଣି ଫେରଆସି ମାଯ୍ନାକୁ ଲୁଚାଇ ଫଟୋ ଖଣ୍ଡିକ ଦେଖିବାକୁ ଲାଗିଲା । ଠିକ୍ ସେତିକିବେଳକୁ ମାଯ୍ନା ବଡ଼ ପାଟିରେ ପଢ଼ା ଆରମ୍ଭ କରି ମୋହନର ଅଲକ୍ଷ୍ୟରେ ତାକୁ ଲକ୍ଷ୍ୟ କରୁଥାଏ । )

ମାଯ୍ନା—(ପଢ଼ୁଥାଏ) ରାଜପୁତ୍ର ଉଦ୍ୟାନ ଭିତରେ ଚାଲି ଯାଉ ଯାଉ ହଠାତ୍ ଦେଖିଲେ ପଥର ବେଦୀ ଉପରେ ଗୋଟିଏ ଅପୂର୍ବ ସୁନ୍ଦରୀ ଝିଅର ଚିତ୍ରପଟ । ଚିତ୍ରପଟଟି ହାତରେ ଉଠେଇ ନେଇ ରାଜପୁତ୍ର ଭାବିବାକୁ ଲାଗିଲେ—କାହାର ଏ ଚିତ୍ରପଟ ? କଞ୍ଚି ଦେଶର ରାଜକୁମାରୀ ଚମ୍ପାଙ୍କର ନୁହେଁ ତ ? ···ଏଠିକି ସେ ଆସିଲା କେମିତି ? ରାଜପୁତ୍ର ଚିନ୍ତା କରିବାକୁ ଲାଗିଲେ—ଇଏ ଆଉ ତାଙ୍କ ଦୁଷ୍ଟ ସାନ ଭଉଣୀ ରୁପ୍ନାର କାରସାଦ ନୁହେଁ ତ ? କେଜାଣି ? ···ରୁପ୍ନା କୋଉଠି ହୁଏତ ଲୁଚି ତାଙ୍କର ଅବସ୍ଥା ଦେଖୁଥିବ । ସେ କ'ଣ କରିବେ ? ଚିତ୍ରପଟଟି ରଖିଦେଇ ଯିବେ । ମନ ତ ବଳୁନି ? ମନରେ ଯେତିକି ଆନନ୍ଦ ସେତିକି ଭୟ । ରାଜପୁତ୍ରଙ୍କ ଅବସ୍ଥା ସାଂଘାତିକ । ଠିକ୍ ଏତିକି-ବେଳେ ରୁପ୍ନା ଚାଲାକା ପରି କୋଉଠୁ ଛୁଟିଆସି ରାଜପୁତ୍ରଙ୍କୁ ପଚାରିଲା—"ଭାଇ କେମିତି ହେଉଚି" ?

ମୋହନ—(ଚମକି ଉଠି) ଏଁ ! କ'ଣ କେମିତି ହେଉଚି ?

ମାଯ୍ନା—କିଏ ? ଭାଇ, ତମେ ବୋଉ ପାଖକୁ ଯାଇନ ? କ'ଣ କରୁଥିଲ ଏଠି ?

ମୋହନ—ହୁଁ, କି ବହି ସେ ପଢ଼ା ହଉଥିଲା ?

ମାମ୍ବା—ତମେ ଆଗେ କୁହ, ଏଠି ତମେ କ'ଣ କରୁଥିଲ ?
ମୋହନ—"ଗୁମ୍ଫା ଆସି ରାଜପୁତଙ୍କୁ ପଗୃରଲ"—ନାହିଁ ?
ମାମ୍ବା—ନ ହେଲ ଏବେ, ମାମ୍ବା ତା' ମୋହନ ଭାଇଙ୍କୁ ପଗୃରୁଚ—
ମୋହନ—ମାମ୍ବା !
ମାମ୍ବା—ସତ କୁହ ଭାଇ, କେମିତ ହେଇଚ ?
ମୋହନ—କ'ଣ କେମିତ ହେଇଚ ?
ମାମ୍ବା—ଯାହାକୁ ଦେଖି ପାଦ ଅଟକିଗଲ ।
ମୋହନ—ତୁ ଜାଣୁ ମାମ୍ବା, ମୁଁ ଡାକ୍ତର । ମୋ ଗୁଡ ପଥରଠୁ ଟାଣ ।
ମାମ୍ବା—ହେଲେ ଡାକ୍ତର ସାହେବ, ତମ ନଜ ଷ୍ଟେଥସ୍କୋପ୍ ତମ ନଜ ଗୁଡରେ ଲଗେଇ ଦେଖିଲେ ତମେ ବୁଝିପାରବ ଯେ ମାଙ୍କଡ଼ା ପଥର ପର ତମର ଯେ ଟାଣ ଗୁଡ ଏଇନେ କେମିତ ବରଡ଼ା ପତର ପର ଥରୁଚ ।
ମୋହନ—ତୁ ଅତ ଫାଜିଲ୍ ହେଇଗଲୁଣି ମାମ୍ବା (ଗୃଲଯାଉଥିଲ)
ମାମ୍ବା—ଏ ଭାଇ, ଶୁଣ—ଶୁଣ ! ମୋ ରାଣ, ଟିକଏ ରୁହ । ଏ କଥା ଆଉ କହବନ । ତମ ପଥର କଥାରୁ ମୋ ମନେ ପଡ଼ଲ—ଆମ ରଞ୍ଜନ ଗୋଟାଏ ପ୍ରଶ୍ନ ମତେ ପଗୃରଲ ଯେ ମତେ ଠିକ୍ ଆସିଲ ନାହିଁ—
ମୋହନ—କ ପ୍ରଶ୍ନ ?
ମାମ୍ବା—କହୁଚ ଶୁଣ । ଦକ୍ଷିଣ ଭରତରେ ଯେଉଁ ଦୁଇଟି ପ୍ରସିଦ୍ଧ ନଦୀରୁ ଶ୍ରେଷ୍ଠ ଶ୍ରେଷ୍ଠ ଲାଲ ପଥର ସବୁ ସଂଗ୍ରହ କରଯାଏ, ସେ ନଦୀ ଦୁଇଟି ଭିତରୁ ଗୋଟିକର ନାମ ତ କୃଷ୍ଣା । ଅନ୍ୟଟିର ନାମ ?
ମୋହନ—କାବେରୀ ।
ମାମ୍ବା—ନାହିଁ, ଗୋଦାବରୀ ବୋଧହୁଏ ।
ମୋହନ—ନା, କାବେରୀ ।
ମାମ୍ବା—ତମେ ଠିକ୍ ଜାଣ ? କାବେରୀ ?
ମୋହନ—(ଚଡ଼ଯାଇ ବଡ଼ପାଟିରେ) ହଁ କାବେରୀ—କାବେରୀ—କାବେରୀ (ମହାବୋଉ ପଶି ଆସିଲେ) ।
ମହାବୋଉ—ହଇରେ ମହା, ତୁ ଏଡ଼େ ପାଟିରେ କାହିଁକି କାବେରୀ କାବେରୀ ହଉଚ ? ଏଗୁଡ଼ାକ କି ଅଲଜୁକ କଥା ।

ମୋହନ—ଅଲଜୁକ କଥା !

ମାହ୍ନା—ତୁ କ'ଣ ଭାବିଚୁ ବୋଉ, ଏ ଦୁନିଆରେ କାବେରୀ ବୋଲି ଆଉ କେହି ନାହିଁ ? ଏକା ତୋଟି ଯିଏ ବୋହୂ ହୋଇ ଆସିବ ତା'ର ନାଁ "କାବେରୀ" ।

ମୋହନ—ତୁ ମତେ ଚହ୍ଲାଉଚୁ ମାହ୍ନା ?

ମାହ୍ନା—ଯାହା ଟିକିଏ ବାକି ଥିଲ ଦେଖିଲ ଏବେ ଧୀରେ ଧୀରେ ଚହ୍ଲାଇବାକୁ ଚେଷ୍ଟା କରୁଚ ।

ମୋହନ—ଏସବୁ କ'ଣ ହଉଛି ବୋଉ ?

ମହାବୋଉ—(ହସି) ଆରେ ମୁଁ କ'ଣ କରିବ । ତମ ଭାଇଭଉଣୀଙ୍କର ତ ଲଗିଚ, ମତେ କାହିଁକି କହୁଚ ?

ମାହ୍ନା—ତୁ ଟିକିଏ ରହ ବୋଉ, ମୁଁ ଶଙ୍ଖଟା ଆଣେ । (ଚାଲିଗଲା । ପୀତାମ୍ବର ସିଡ଼ିରେ ଓହ୍ଲାଇଲେ । )

ମହାବୋଉ—ହେଇଟି ଶୁଣୁଚ ?

ପୀତାମ୍ବର—ହଁ—ହଁ, ମୁଁ ସବୁ ଶୁଣିଚ ! ମାହ୍ନା କୁଆଡ଼େ ଗଲା ? ଆଲୋ ମାହ୍ନା, ଗୋଟାଏ ଲଫାପା ଆଣ ତ, ସେମାନଙ୍କ ଘରକୁ ଆଜି ଚିଠିଟା ଲେଖିଦିଏଁ ।

ମହାବୋଉ—କ'ଣ ଲେଖିବ ? (ମୋହନ ଲଜରେ ହୋଇ ଚାଲିଗଲା)

ପୀତାମ୍ବର—ମହାବୁ ଦେଖି କ'ଣ ବୁଝି ପାରିଲ ନାହିଁ ଯେ ପୁଣି ପଚାରୁଚ ? ତମର କଥା ରହିଲା ମହାବୋଉ—ଏଇ ପଚିଶ ତାରିଖରେ ବାହାଘର ।

ମାହ୍ନା—(ପଶିଆସି) କେବେ ତାରିଖ ବାପା ?

ପୀତାମ୍ବର—ପଚିଶ ତାରିଖରେ !

ମାହ୍ନା—(ବଡ଼ପାଟିରେ) ଶୁଣୁଚ ଭାଇ ! ପଚିଶ ତାରିଖରେ । ଆଜିଠୁ ଏଇ ଅନୁକୂଳ ଶଙ୍ଖ ବାଜିଲା—

(ଶଙ୍ଖଧ୍ୱନି ସହ ପ୍ରଥମ ଅଙ୍କ ଶେଷ ହେଲା)

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ପୀତାମ୍ବରବାବୁଙ୍କ ସେଇ ଘର । ସକାଳ । କାଦମ୍ବରୀ ଆସିଲା । ହାତରେ ଗିନାଏ ପାଣି । ଟିକିଏ ଏଣିକି ତେଣିକି ଚାହିଁ, ଧୀର ଗଳାରେ ଡାକିଲା— )

କାଦମ୍ବରୀ—ମାୟା···ମାୟା !

ମାୟା—(ଭିତରୁ) କ'ଣ ?

କାଦମ୍ବରୀ—ଉଠିଲଣି ?

ମାୟା—ନିଦରୁ ଉଠିଲଣି ଯେ, ବିଛଣାରୁ ଉଠିନାହିଁ ।

କାଦମ୍ବରୀ—ସୁନାଟା ପରା, ମୁହଁଟା ଧୋଇପକେଇ ଟିକିଏ ଏଣିକି ଆସ ।

ମାୟା—କାହିଁକି ?

କାଦମ୍ବରୀ—ମୋ'ରାଣ ତଳକୁ ଆସ, କହୁଚି (ଟିକିଏ ପରେ ମୁହଁ ପୋଛୁ ପୋଛୁ ଆସିଲା ମାୟା )

ମାୟା—ପାହାନ୍ତିଆ ନିଦର ସୁଆଦ ଗୁଡ଼ କ୍ଷୀର ପାଇଁଟାରେ ତମେ କ'ଣ କରୁଚ ଭାଉଜ ? ମୁଁ ତ ଜୀବନରେ ସୂର୍ଯ୍ୟୋଦୟ କେବେ ଦେଖିନି । ଆଉ, ଯେତେ ବେଳରେ ଉଠିଲେ ବି ଅଳସ ଛଡ଼େଇବାପାଇଁ ବିଛଣାରେ ଦଶ ମିନିଟ, ତା' ପରେ ପୁଣି ଆରାମ ଚୌକିରେ ଦଶମିନିଟ୍ ଗଡ଼ପଡ଼ ନହେଲେ ମୁହଁ ନ ଧୁଏ । ତମେ ଆଜି ହେଉଚ କରେଇ ଦେଲନା ।

କାଦେମ୍ବିନୀ—ତମ ବାହାଘର ହୋଇଯାଉ, ଦେଖିବା ଯେ କେମିତି ଆରାମ ଚୌକିରେ ବସି ଅଳସ ଭାଙ୍ଗିବ ।

ମାଧୁରୀ—ଇସ୍, ପୋଷା ହାତୀ ବଣୁଆ ହାତୀକୁ ଫାନ୍ଦରେ ପକେଇଲା ଭଳି କଥା କହୁଚ ?

କାଦେମ୍ବିନୀ—ଦିନେ ହେଲେତ ପୁଣି ଫାନ୍ଦରେ ପଡ଼ିବ ।

ମାଧୁରୀ—ଏ ଜନ୍ମରେ ନୁହେଁ । ମୁଁ ବାହା ହେବିନି ।

କାଦେମ୍ବିନୀ—ଆଚ୍ଛା, ଆଚ୍ଛା, ଦେଖିବା, ଦେଇଙ୍କର କେମିତି ଏ ଟାଣ ରହିବ ।

ମାଧୁରୀ—ବା ! ବା ! ବାହାଘରର ଦିନ ଆଠଟାରେ ତୁମକୁ ବୋଧ ହୁଏ ପାଣିଆ ଏମିତି ମିଠା ଲାଗିଲାଣି ଯେ, ସେ ମିଠା ଅନ୍ୟକୁ ଚଖେଇବାକୁ ବସିଲଣି ।···ଆଚ୍ଛା ଭାଗ୍ୟରେ ଥିଲେ ସେ ମିଠା ଚଖାଯିବ ।

କାଦେମ୍ବିନୀ—(ହସି ହସି) ଭାରି କଥା କହି ଜାଣ ଏକା ତମେ ।

ମାଧୁରୀ—ଆଚ୍ଛା, କୁହନ୍ତ, ମତେ ଡାକିଲ କାହିଁକି ? ଆଉ ଏଠି ଠିଆ ହୋଇ ତମେ କ'ଣ କରୁଚ ? ହାତରେ ଏ କ'ଣ···ଓ, ପାଣି ଗିନାଟା । ମୁଁ କହିଲି କି ଭାଉଜ ମୋର ହାତରେ ଗ୍' କପ ଧରି ସକାଳୁ ମତେ ଆଦର କରି ଡାକୁଚନ୍ତି ?

କାଦେମ୍ବିନୀ—ଗ୍' ହବଣି ଯେ, ବୋଉ କାହାନ୍ତି ?

ମାଧୁରୀ—ବାହାଘର ଦିନଠୁ ସେ ଚରକପରି ଚବିଶ ଘଣ୍ଟା ଏ ଘର ଧାଇଁ ବୁଲୁଚ । ଏଇଠି ଆଉ ଟିକିଏ ଠିଆ ହୋଇଯାଅ, ବଲେ ଆସି ହାବୁଡ଼ିଯିବ ।

କାଦେମ୍ବିନୀ—କାଇଁ ନାହାନ୍ତି ତ, ମୁଁ ସବୁଆଡ଼େ ଖୋଜିଲିଣି, ଗଲେ କୁଆଡ଼େ ?

ମାଧୁରୀ—ସେ ଖବର ମୁଁ ତା' ହେଲେ ଆଉ ଦେବ କେମିତି ? ମୁଁ ତ ଏପର୍ଯ୍ୟନ୍ତ ଆରାମ ଚୌକିରେ ଆଖି ବୁଜି ବସି ଅଳସ ଭାଙ୍ଗୁଥା'ନ୍ତି ।

କାଦେମ୍ବିନୀ—ଆଉ କ'ଣ ନଦୀକୁ ଗାଧୋଇ ଗଲେ ?

ମାଧୁରୀ—ଅସମ୍ଭବ ନୁହେଁ । କାଲି ସନ୍ଧ୍ୟାରେ ନଈକୁ ଯିବା ପ୍ରସ୍ତାବ ମୀନାବୋଉ ମାଉସୀ ଆଣିଥିବା ମୁଁ ଶୁଣିଚି ।···ହିଁ ଭାଉଜ, ବାହା-

ଘରରେ ଆମ ଘରକୁ ଯେତେ କୁଣିଆ—ବିଶେଷତଃ ମାଇପି କୁଣିଆ ଆସିଥିଲେ, ସମସ୍ତଙ୍କୁ ଚିହ୍ନିଲ ?

କାବେରୀ—ପରୁଣ ଜଣରୁ ତ କମ ଆସି ନ ଥିଲେ । ଏତେ ଘୋ ଘୋ ଭିତରେ ଚିହ୍ନନ୍ତ କେମିତି ? କାଲ ତ ସମସ୍ତେ ବିଦା ହୋଇଗଲେ ।

ମାୟା—ହଁ, ରାଧା ଆଉ ସୀତାବୋଉ ମାଉସୀଙ୍କୁ ଛାଡ଼ି ସମସ୍ତେ ବିଦା ହେଇଗଲେ ।

କାବେରୀ—ଏ ଦୁହେଁ ତମ ମାମୁଁଘର ଗାଁର ଲୋକ ପରା ?

ମାୟା—ହଁ, ରାଧା ହେଉଛି ବୋଉର ଝିଆରୀ—ଆଉ ସୀତାବୋଉ, ସମ୍ପର୍କରେ ବୋଉର ଭଉଣୀ ହବ । ସଦ୍ୟ ଜଙ୍ଗଲରୁ ଧରା ହୋଇ ଆସିଥିବା ଦୁଇଟି ଜନ୍ତୁ ପରି ଏ ଦୁହିଁଙ୍କର ସ୍ୱଭାବ । ବୋଉକୁ ପଟାପଟି କରି ମାସ ଛ'ଟା ଏଠି ରହିବାର ବନ୍ଦୋବସ୍ତ ଦୁହେଁ କଲେଣି ।

କାବେରୀ—କୁଟୁମ୍ବ, ବନ୍ଧୁ ବାନ୍ଧବ ଲୋକ, ମଣିଷ କ'ଣ କାହାକୁ ପିତା ଲାଗେ ।

ମାୟା—ଭଲ କଥା, କୁଟୁମ୍ବ । ସିଏ ଯାହାର ବନ୍ଧୁ ତା'ର—ଯାହାକୁ ପିତା ନ ଲାଗି ମିଠା ଲାଗିବ ଲାଗୁ । ସେଥିରେ ମୋର ହାନିଲାଭ କିଛି ନାହିଁ । ହଁ, ତମର ହେଇଚି କ'ଣ ? ପାଣି ଗିନାଏ ହାତରେ ଧରି କାହିଁକି ଏଠି ଠିଆ ହେଇଚ ?

କାବେରୀ—ତମେ ଜାଣିନ ?

ମାୟା—ଏଥିରେ ପୁଣି ଏମିତି ବିଶେଷ କିଛି ଜାଣିବାର ଅଛି ନା କ'ଣ ? ଟିକିଏ ଦୟାକରି ଜଣାଅ ତ ।

କାବେରୀ—ମୁଁ ଗାଧୋଇ ସାରିଲିଣି । ଆଗେ ବୋଉଙ୍କ ପାଦଧୁଆ ପାଣି ପିଇଲେ, ପରେ ଅନ୍ୟ କାମ କରିବି ।

ମାୟା—କ'ଣ କହିଲ ? ବୋଉର ପାଦଧୁଆ ପାଣି ପିଇବ ?

କାବେରୀ—ହଁ...

ମାୟା—ହଁ କ'ଣ ମ, ପାଦଧୁଆ ପାଣି ତମେ କାହାକୁ କହୁଚ ମୁଁ ବୁଝିପାରୁ ନାହିଁ ।

କାବେରୀ—ଏଥିରେ ଆଉ ବୁଝିବାର କ'ଣ ଅଛି ।

ମାଧୁରୀ—ମାନେ, ସେ ଯୋଉ ପାଣିରେ ତା' ପାଦ ଧୋଇବ ସେଇ ପାଣି ତମେ ପିଇବ ?

କାବେରୀ—ହଁ—

ମାଧୁରୀ—ହେ ଭଗବାନ, ତୁମକୁ ଏ ବୁଦ୍ଧି କିଏ ଦେଲା ?

କାବେରୀ—ବୁଦ୍ଧି ଆଉ ଦବ କିଏ । ଶାଶୁଙ୍କ ପାଦଧୁଆ ପାଣି ତ ପିଅନ୍ତି ।

ମାଧୁରୀ—ସେଇଥିପାଇଁ ତମେ ପାଣି ଗିନାଏ ଧରି ଏଠି ଠିଆ ହେଇଚ ?

କାବେରୀ—ହଁ, ଏଇ ପାଣିରେ ସେ ତାଙ୍କ ବୁଢ଼ା ଆଙ୍ଗୁଠି ବୁଡ଼େଇ ଦେବେ—ଆଉ ସେଇ ପାଣି ନେଇ ମୁଁ ପିଇବି ।

ମାଧୁରୀ—ତମେ ହୋଷ୍ଟେଲରେ ଥାଇ ଏ କଥା କହୁଚ ଭଉଜ ! ତମେ ଜଣେ ଡାକ୍ତରର ସ୍ତ୍ରୀ—ନିଜେ ଗ୍ରାଜୁଏଟ୍ । ବୋଉର ସେ ଯୋଉ ଅସନା ଆଙ୍ଗୁଠି—ମଲା ନଖ—ତା'କୁ ସିଏ ଏ ପାଣିରେ ବୁଡ଼େଇବ ଆଉ ସେଇ ପାଣି ତମେ ପିଇବ ?

କାବେରୀ—ଆଠ ଦିନ ହେଲା ପିଉଚି—ଆଉରି କିଛି ଦିନ ବି ପିଇବି ।

ମାଧୁରୀ—ତମକୁ ଅସନା ଲାଗୁନି ଭଉଜ । ମୁଁ ତ ହେଇଥିଲେ ବାନ୍ତି କରିପକେଇ ଥାଆନ୍ତି ।

କାବେରୀ—ଏଇ ବୋଉ ହେଇକା ଆସିଲେଣି ? (ଓଢ଼ଣା ଟାଣି ଠିଆ ହେଲା । )

ମହାବୋଉ—(ଆସୁ ଆସୁ) ଓଦା ଲୁଗାଗୁଡ଼ିକ ସେଇ ତାରବାଡ଼ ଉପରେ ରଖିଦେଇ ଆ ସୀତାବୋଉ—ଟିକେ ଶୁଖେଇ ଦବ । (ମହାବୋଉ, ସୀତାବୋଉ ଓ ରାଧା ଆସିଲେ । ସୀତାବୋଉ ମହାବୋଉଙ୍କ ସମବୟସୀ । ରାଧା ଯୁବତୀ । )

ସୀତାବୋଉ—ଏଇ ଦେଖ ଲୋ ଅପା, ତୋ ବୋହୂ କେମିତି ପାଣିଗିନା ଧରି ତୋ ବାଟ ଜଗି ଠିଆ ହେଇଚି । ତପସ୍ୟା କରି ବୋହୂ ପାଇଚୁ ଲୋ ।

ମହାବୋଉ—ମୁଁ ମରଯାଏଟି । ଛୁଆଟା କେତେବେଳୁ କେଜାଣି ଏମିତ ଠିଆ ହେଇଚ । ଆଣ ମା—ଗିନା ଥୁଅ—(କାବେରୀ ଗିନା ଥୋଇଲା, ମହାବୋଉ ଆଙ୍ଗୁଠି ବୁଡ଼େଇଦେଲେ । )

ରାଧା—ମଲା, ଭଲକରି ଆଙ୍ଗୁଠିଟା ବୁଡ଼େଇ ଦଉନ ଅପା···ଇଏ କ'ଣ ମନରଖା କାମ ହେଇଚ ? (କାବେରୀ ପାଣି ନେଇ ଚାଲିଗଲା । ମାଧ୍ବୀ ଆଶ୍ଚର୍ଯ୍ୟ ହେଇ ଏ ଦୃଶ୍ୟ ଦେଖୁଥାଏ । )

ମାଧ୍ବୀ—ଏ କ ଫାର୍ଶ ଏଠି ଲଗିଚ ?

ମହାବୋଉ—ଏଁ ! କାହାକୁ କହୁଚୁ ବା ? ମତେ କହୁଚୁ ?

ମାଧ୍ବୀ—ଆଉ କାହାକୁ କହିବି ?

ମହାବୋଉ—କଲେ କ'ଣ ହେଇଚ ? ସକାଳଟାରୁ କାହିଁକି ଏମିତ ଫଁ ଫଁ ହଉଚୁ ?

ମାଧ୍ବୀ—ଫଁ ଫଁ କ'ଣ ହଉଚ ? ସତରେ ମୋର ଫଣା ଥିଲେ, ମୁଁ ଆଜ ଏଠି ସେମିତି ନମାରି ଛାଡ଼ନ୍ତି ନଥା'ନ୍ତ । ଏତେ ସଉକରେ ବାଛି ବାଛି ଇମିତ ବୋହୂ ଆଣିଥିଲୁ ଯେ, ସେ ହକାଲୁ ଉଠି ତୋ ପାଦଧୂଆ ପାଣି ନ ପିଇଲେ ତା'ର ମୁକ୍ତି ନାହିଁ ।

ମହାବୋଉ—ଇଲୋ, ତୁ କ'ଣ କହୁଚୁ ବା ?

ମାଧ୍ବୀ—କ'ଣ କହୁଚ ବୁଝିପାରୁନୁ ? ତୋ' ପାଦକୁ ଚାହିଁଲୁ—ଫାଟି ଆଁ କରିଚ···ସେଥିରେ ପୁଣି କାଠଯୋଡ଼ ନଈରୁ ଘରଯାଏ ଚାଲି ଚାଲି ଆସିଲୁ । ରାସ୍ତାଯାକର ମଇଳା ପାଦରେ ଲଗିଥିବ । ସେଇ ଆଙ୍ଗୁଠିକୁ ତୁ ପାଣି ଗିନାରେ ଟବ୍‌କରି ବୁଡ଼େଇ ଦେଲୁ—ଆଉ ସେ ପାଣିକୁ ସେ ପିଇବେ ।

ସୀତାବୋଉ—ପିଇଲେ ନାକରି କଥା କ'ଣ ହବ ଲୋ ଝିଅ । ଶାଶୁ ଶଶୁର ଦେବତା ସମାନ···ତାଙ୍କ ପାଦଧୂଆ ପାଣି ପିଇଲେ ତ ତା'ର ମଙ୍ଗଳ ।

ମାଧ୍ବୀ—ସେ ପାଣି ଗିନାକ ଲବରେଟାରୀରେ ନେଇ ପରୀକ୍ଷା କରି ଦେଖିଲେ ମଙ୍ଗଳ ଅମଙ୍ଗଳ ସବୁ ଜଣା ପଡ଼ନ୍ତା ।

ରାଧା—ସିଏ ତ ତାଙ୍କ ଶାଶୁଙ୍କ ପାଦଧୂଆ ପାଣି ପିଇବେ—ତମେ କାହିଁକି ଏମିତି ହଉଚ ମାଧୁଆ ଅପା ? ଇସ୍ସ୍...କାବେରୀ ଭଉଜ ସିନା ଏଠି ଏକା ତାଙ୍କ ଶାଶୁଙ୍କ ପାଦଧୂଆ ପାଣି ପିଉଛନ୍ତି—ଆମ ଗାଁ ବୋହୂଏ ତ ଯାଇ ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଯେତେ ପୁରୁଖା ମାଇପେ ଥିବେ, ସମସ୍ତିଙ୍କ ପାଦ ଧୋଇ ପାଣି ପିଇବେ ।

ମାଧୁଆ—ଶୁନ ହୋ । ଏଠି ଆସି ଗାଁ ଇତିହାସ ବଖାଣିଲ । (ବୋଉକୁ) ହେ ବୋଉ, ତୁ କାଲ ହେଇଗଲୁଣି ନା କ'ଣ ?

ମହିବୋଉ—ଆଲେ ମତେ ଏମିତି ଧମକଉଚୁ କାହିଁକି ? ତୁ ତ ଏଠି ଠିଆହୋଇଥିଲୁ, ତାକୁ ମନା କରିଦେଲୁ ନାହିଁ ।

ମାଧୁଆ—ମୁଁ କାହିଁକି ମନା କରିଥାନ୍ତି ? ତୁ ଶାଶୁ—ସେ ବୋହୂ । ତୁ ଭବଗ୍ରାହୀ ରଘୁଆରଙ୍କ ପରି ପଦ୍ମର ବଢ଼େଇ ଦେଲୁ—ସିଏ ବଳରାମୀ କୈବର୍ତ୍ତି ପରି ପଦ୍ମର ପଖାଳିଲେ । ମୁଁ ଉପରେ ପଡ଼ି କହିଥାନ୍ତି କ'ଣ ଏଣେ ତୋଠୁ ଶୁଣି ତେଣେ ତାଙ୍କଠୁ ଶୁଣିବାକୁ । ମଝିରେ ତ ପୁଣି ଏ ଦ'ମୂର୍ତ୍ତି ଅଛନ୍ତି ।

ମହିବୋଉ—ତୁ ଏବେ କ'ଣ କହୁଚୁ କହୁନୁ ?

ମାଧୁଆ—ମୋର କିଛି କହିବା ଦର୍କାର ନାହିଁ । ତୋ ତରଫରୁ ତୁ ଏ ଫାର୍ଶି କାଲଠୁ ବନ୍ଦ କରିଦେ । ନଇଲେ...(ଟିକିଏ ରହି) ମୁଁ ତ ଭାବୁଚି ଭଉଜଙ୍କ ଭଳି ରାଜଏଟ୍ ଝିଅ ଏ ବିଷୟରେ ତାଙ୍କ ଦେଖିଲି କାମ କରୁଥିବେ । ଏ ପାଣିତକ ଫିଙ୍ଗିଦେଇ ତେଣେ ଭଲ ପାଣି ଟୋପାଏ ପିଇଦେଉଥିବେ ।

ସୀତାବୋଉ—ତୋ ଝିଅ କଥା ଶୁଣୁଚୁ ମହିବୋଉ ଅପା । କାଲି ସକାଳର ବୋହୂଟା ନାଁରେ କେମିତି ଉଦ୍ଦେଇ କରି କହୁଚି ।

ରାଧା—ତୁ କିଛି ଜାଣିନୁ ବା ! ଇଏ ପାଠୋଇ କି ସିଏ ପାଠୋଇ । ମାଧୁଆ ଅପା ଯାହା କହୁଚି ଠିକ୍ । ତୁ ଚାଲ, ଆମେ ଦେଖିବା ।

ମାଧୁଆ—କ'ଣ ଦେଖିବ ?

ରାଧା—ଲୁଚ କର ଦେଖିବା, କାବେରୀ ଭାଉଜ କ ପାଣି ପିଉଚ ।

ମାମ୍ବା—ଦେଖୁଚ ମ୍ବା' ବୁଦ୍ଧିକି । ଭାଉଜଙ୍କ ଉପରେ ଗୋଇନ୍ଦାଗିର କରିବାକୁ ବସିଲଣି ।

ମହାବୋଉ—ଆ'ଲେ ସୀତାବୋଉ, ଆଜି ବୋହୂର ଅଷ୍ଟମଙ୍ଗଳା—ଏଇଟା ସାଙ୍ଗରେ କଏ ମୋର ଝକର ଝକର ହେଉଥିବ ।

ମାମ୍ବା—(ବୋଉକୁ ଅଟକେଇ) ତୁ ରାଗିଗଲେ କ'ଣ ମୁଁ ଡରିଯିବ ବୋଉ ? ଦେଖ—ମୁଁ ଯାହା କହୁଚି—ମନେରଖିଥିବୁ ।

ସୀତାବୋଉ—ଏ ରାହାବାଲୀ ଝିଅ ଖଣ୍ଡକୁ ତୁ କୋଉଠି ବାହା କରିବୁ ଲେ ଅପା । ମ୍ବା' ହାତଗଣ୍ଠି ପଡ଼ିଲେ ଦେଖିବୁ, ତୋ' କୋଇଁ ମୁଣ୍ଡରେ ଏକା ଶାଗୁଣା ବସିବ ।

ମାମ୍ବା—ତମେ ତ ଅଛ, ମୋର ଚନ୍ତା କ'ଣ ମାଉସୀ । ତମେ ମୋ ପାଇଁ ବରଘର ଠିକ୍ କରିଦେବ ଯେ, ମୁଁ ସେଇଠି ବାହା ହେବ । ଆଉ ଯଦି ବାହାହେଇ ନପାରେ; ତେବେ ମଲା ପରେ ଓଅଡ଼ ହେଇ ତମର କାନ୍ଧରେ ବସିବ ।

ସୀତାବୋଉ—(ଡରରେ) ଇଲେ ବୋଉଲେ !

ମହାବୋଉ—ମାମ୍ବା !

ମାମ୍ବା—କ'ଣ ?

ମହାବୋଉ—ସିଏ ପର ତୋ ମାଉସୀ ?

ମାମ୍ବା—ତୋର ଯେତେବେଳେ ଭଉଣୀ, ମୋର ମାଉସୀ ନହେଇ କ'ଣ ପିଇସୀ ହୁଅନ୍ତେ ?

ସୀତାବୋଉ—ତୁ ଗୃଲ ବା ଅପା—ଏ ଖରଖଟ୍ଟା କଥାକୁ କଏ ଧରୁଚ ।

ରାଧା—ହେ, ସୀତାବୋଉ ଅପା ! ମାମ୍ବା ଅପା ହାତକୁ ଦେଖିଲୁଣି—କେମିତ ଫଙ୍ଗୁଲା ।

ସୀତାବୋଉ—ଯେତେଲେ ମାମ୍ବା—ଆଜି ବୋହୂଟାର ଅଷ୍ଟମଙ୍ଗଳା—ଏ ଭଲ ଦିନଟାରେ ତୁ ହାତଟାକୁ ଫଙ୍ଗୁଲା ରଖିଚୁ ?

ମାଯ୍ନା—ଦେଖି, ଦେଖି, ତମ ଦାଦାଙ୍କ ଆଖି ପରୀକ୍ଷା କରେ ! (ଆଖି ଆଗରେ ହାତ ହଲେଇ) ନାଇଁ, ଠିକ୍ ଅଛୁ ତ । ···ଦେଖତ ଟକ୍ ଟକ୍ କଲା ଫିତାରେ ଘଡ଼ିଟା ବନ୍ଧା ହୋଇଚ, ଦୁ'ଜଣ ଯାକ ସ୍ୱର ମିଳେଇ କହୁଚ—ଫଙ୍ଗୁଲା !

ସୀତାବୋଉ—ହଁ ବା, ଆମେ ଜାଣୁ । ତମେ ପାଠୋଇ ଝିଅ ହସିବାଠଉଁ କାଣିବାଯାଏ ସବୁ କାମ ଘଡ଼ି ଦେଖି କର ।···ହାତରେ ଘଡ଼ିଟା ବାନ୍ଧିଲେ ଯେମିତ ବେଳ ଆଉ ଗଡ଼ିଯିବ ନାହିଁ—ସବୁଦିନେ ଏଇ ଭଙ୍ଗ ଥିବ ! ବୁଢ଼ୀ ହବ ନାଇଁ କି ବାଲ ପାଚିବ ନାଇଁ !

ମାଯ୍ନା—ନା—ମୁଁ ବୁଢ଼ୀ ହେବି ନାଇଁ କି ମୋ ବାଲ ପାଚିବ ନାଇଁ ।

ରାଧା—ତୁ କି କଥା କହୁଚୁ ବା ମାଯ୍ନାଅପା···ବୁଢ଼ୀ ପୁଣି ନହବୁ କିଏ ?

ମାଯ୍ନା—ନା—ବୁଢ଼ୀ ହେଇ ବାଲ ପାଚିବା ଆଗରୁ ମୁଁ ସୁଇସାଇଡ୍ କରିଦେବି ।

ସୀତାବୋଉ—କ'ଣ କରିଦେବୁ ଲୋ ଅପା ?

ମହୀବୋଉ—ମୁଁ ଜାଣି ନାଇଁ ।

ରାଧା—ଆଲେ, ସୁସାଇଟି କରିବ । ଆମ ଗାଁରେ ଯେମିତ ସୁସାଇଟି କରି ଧାନ ରଖୁଚନ୍ତି, ମୂଷା ଖାଉନାହିଁ, କଟକରେ ଆଣି ଆଳୁ ବାହନ ରଖଉଚନ୍ତି, ପଚହଡ଼ି ଯାଉନ; ମାଯ୍ନା ଅପା ସେମିତ ସୁସାଇଟି କରି ବାଲ ରଖିବ ଯେ, ସେ ବାଲ ପାଚିବ ନାଇଁ ।

( ରାଧା କଥାରେ ମାଯ୍ନା ଜୋର୍‌ରେ ହସି ଉଠିଲା )

ମହୀବୋଉ—ତୁ ଅସିବୁଟି ଲେ ସୀତାବୋଉ—ସେ ଅଜଣା କଥାରୁ କ'ଣ ମିଳିବ ।

ସୀତାବୋଉ—ଆ'ଲେ ରାଧା—ଆ···(ଏମାନେ ଚାଲିଗଲେ)

ମାଯ୍ନା—( ବଡ଼ପାଟିରେ ) ପୂଜାରୀ···ରୀ' ଜଲଖିଆ ଟିକେ ଆଜି କ'ଣ ମିଳିବ ନାଇଁ ? ପେଟ ଭିତରେ ଯେ କଲ ଲଗିଲା ଚାଲିଲାଣି । ( କାବେରୀ ଅସିଲା )

କାବେରୀ—ଗୁ' ଖାଇବ ପର୍ବ ଆସ ।

ମାଯ଼ା—ଆମ ଘରକୁ ଆସି ସକାଳୁ ଗୁ' ଖାଇବା ଅଭ୍ୟାସ ତମର ନିଶ୍ଚୟ ଛାଡ଼ିସିବଣି ଭଉଜ ?

କାବେରୀ—କାହିଁକି ?

ମାଯ଼ା—ଗିନାଏ ଗିନାଏ ପାଦଧୂଆ ପାଣି ପିଇସାରିଲେ ପରେ ଆଉ ଗୁ'ର ଦରକାର କ'ଣ ? ସତେ ଭଉଜ, ଏ କଥାଟାକୁ ମୁଁ ମୋଟେ ଭୁଲି ପାରୁନି । ତମଭଳି ଶିକ୍ଷିତା ଝିଅ କେମିତି ଯେ ଏଇଟା ବରଦାସ୍ତ କରୁଚ···

କାବେରୀ—ହେ···ତମେ ଏଡ଼େ ପାଟି କରନା; ବୋଉ କାଳେ କୋଉଠି ଶୁଣୁଥିବେ ।

ମାଯ଼ା—ଶୁଣୁଥିବ କ'ଣ—ମୁଁ ତାକୁ ଆଜି ଯାହା ଶୁଣେଇ ଦେଇଚି ନା, ଦେଖିବ, କାଲିଠୁ ଏ ପବିତ୍ର ପାଦୋଦକ ପାନ ଏକାବେଳକେ ନିଷେଧ । ( ପହଲି ଆସିଲି, ଏମାନଙ୍କୁ ଦେଖି ମୁହଁରେ ହାତ ଦେଇ ଚାଲିଯାଉଥିଲା )

ମାଯ଼ା—ହେ—ହେ—ତିନି ନମ୍ବର ଅସୁର—ଶୁଣ । ମୁହଁରେ ହାତ ଦେଇ କୁଆଡ଼େ ପଳଉଚ ? କାଢ଼—ମୁହଁରୁ ହାତ କାଢ଼ । (ପହଲି ଆଦେଶ ପାଳନ କଲା) ବାବ୍ବା···ମୁହଁରେ ଇଞ୍ଚେ ବହଳର ସ୍ନୋ ପାଉଡ଼ର ?

ପହଲି—ତୋ' ସ୍ନୋ ମୁଁ ଆଣିନି । ମତେ ତ ଭଉଜ ଦିଅନ୍ତି ।

ମାଯ଼ା—ଭଉଜ ଦିଅନ୍ତି ?···ସତେ ଭଉଜ, ତମେ ଏଇଟାକୁ ସ୍ନୋ ପାଉଡ଼ର ମାରି ବେଶକରିଦେଉଚ ?

କାବେରୀ—(ହସି) ଦିନେ କୋଉଦିନ ଟିକେ ଲଗେଇ ଦେଇଥିଲି···କଓ ପହଲି, ଆଜି କୋଉଠୁ ଆଣିଲୁ ?

ପହଲି—ତମର ସେଇ ଟେବୁଲ ଉପରୁ—ସେଇ ସ୍ନୋ ଆଉ ସେ ଗୋଲାପୀ ପାଉଡ଼ର ।

ମାୟା—ଛିକ୍, ମାଇଚଥା—ମୁହଁରେ ଗୋଲପି ପାଉଡ଼ର ମାରି ଏଠି ଆସି ମୁହଁ ହଲେଇ କଥା କହୁଚ···ଯା ଏଠୁ । (ପହଲ ପଳାଇଲ) ଗୋଟାଏ କାପଟ ମାଇଚଥା ହବ ଏଇଟା ।

କାବେରୀ—(ହସି ହସି) ମତେ ଏକା ଭାରି ଭଲ ଲାଗେ ତାଙ୍କ ଢଙ୍ଗ ।

ମାୟା—ଆଉ ମୋ ଢଙ୍ଗ ?

କାବେରୀ—କ'ଣ ଯେ କୁହ ତମେ ? ଆଯ ।

ମାୟା—ଏ ହଉଜ, ଦେଖି; ଦେଖି ଟିକେ ମୋ ମୁହଁକୁ ଚୁହିଁ ଠିଆହୁଅତ ।

କାବେରୀ—କାହିଁକି ?

ମାୟା--ଠିଆ ହୁଅ ତ କହୁଚ ! (ଭିତରୁ ମୋହନ ଆସି ଚାଲିଯାଉଥିଲା) ହୋ, ହୋ ଡାକ୍ତରବାବୁ, ସକାଳୁ ଏଡ଼େ ମୂର୍ତ୍ତିରେ କୁଆଡ଼େ ଯିବା ହଉଚ ? ରୋଗୀ ଦେଖି ?

ମୋହନ—ହଁ ।

ମାୟା—ଟିକିଏ ଶୁଣ ।

ମୋହନ—କାହିଁକି ? କ'ଣ ହେଇଚ ?

ମାୟା—ତମେ ଜାଣିପାରୁନ କ'ଣ ହେଇଚ ?

ମୋହନ—(ବିବ୍ରତ ହୋଇ) କ'ଣ ?

ମାୟା—ଡାକ୍ତର ହେଇ ଖାଲି ରୋଗ ଚିହ୍ନିଲ, ଆଉ କିଛି ଚିହ୍ନା ପାଗଲ ନାହିଁ ?

ମୋହନ—କ'ଣ ହେଇଚ କହ ?

ମାୟା—ଭାରି ସୁନ୍ଦର···

ମୋହନ—ଏଁ···

ମାୟା—ସତେ ମ ଭାଇ, ଆମର ଏ କାବେରୀ ଭଉଜ ଦେଖିବାକୁ ଭାରି ସୁନ୍ଦର ।

ମୋହନ—ପାଗଳି (ଚାଲିଗଲା) । (କାବେରୀ ଲାଜରେ ଝାଉଁଳି ପଡ଼ିଲା । ମାୟାର ହସ ଯେମିତି ବନ୍ଦ ହବାର ନୁହେଁ । )

# ଦ୍ୱିତୀୟ ଦୃଶ୍ୟ

( ପୀତାମ୍ବର ବାବୁଙ୍କ ଘରର ଅଳିନ୍ଦ । ମହାବୋଉ ଆସିଲେ । ହାତରେ ଗୋଟିଏ ଧୋତି । ପୂର୍ବକାଳ ଢଙ୍ଗରେ କୁଞ୍ଚା ହୋଇ ଭଙ୍ଗା ହୋଇଛି । )

ମହାବୋଉ—କୁଆଡ଼େ ଗଲୁ କି ? (ବାହାରକୁ ଲକ୍ଷ୍ୟକରି) ଏଇ ଆସ ଆସ··· ଦେଖି ଯା । (ପୀତାମ୍ବର ଆସିଲେ)

ପୀତାମ୍ବର—କଣ ?

ମହାବୋଉ—ଏଇ ଦେଖ—କେମିତି ଢଙ୍ଗରେ, କେମିତି ବାଗରେ କୁଞ୍ଚ କରି ଭଙ୍ଗ ପକେଇଚି । ପଅରଦିନ ତମ ଜନ୍ମଦିନ ହବନା—ସେଇଦିନ ତମେ ପିନ୍ଧିବ ବୋଲି ଆଜିଠୁଁ ଏ ସଜ ହୋଇ ରହିଲାଣି ।

ପୀତାମ୍ବର—ଏ ବୋହୂର କାମ ?

ମହାବୋଉ—ନାଇଁ, ସାଇ ମାଇପେ ଆସି କରିଦେଇଗଲେ ! କ'ଣ ଯେ କହୁନୁ ତମକୁ !

ପୀତାମ୍ବର—ସତେ ଏକା ଭାରି ସୁନ୍ଦର କୁଞ୍ଚ କରିହୋଇଚି ।

ମହାବୋଉ—ତାର କୋଉକଥାଟା ଅସୁନ୍ଦର ଯେ—ଆସ, ଏଣେ ଦେଖିବ ଆସ···

ପୀତାମ୍ବର—ଶୁଣ, ଶୁଣ ମହାବୋଉ ।

ମହାବୋଉ—କ'ଣ ମ ?

ପୀତାମ୍ବର—ତମେ ଭାରି ଖୁସି ନା ? ବୋହୂ ଖୁବ୍ ମନକୁ ପାଇଛୁ !

ମହାବୋଉ—ଏକା ମୋ ମନକୁ ପାଇଚି ! (ଟିକିଏ ନମ୍ର ସ୍ୱରରେ) ମହାର ଗୋଡ଼ ତ ତଳେ ଲାଗୁନାହିଁ । ଏଇ ଦିନ ଦଶ ବାରଟାରେ ତା' ମନ ପୁଣି ଏମିତି ଘର ଧରିଗଲାଣି । ଆଉ ଆଗର ମହା ସେ ଅଛୁ ?···ମା' କଟକଚଣ୍ଡୀ ମୋ ମନ ଜାଣି ଏକା ବୋହୂଟିଏ ମତେ ଦେଇଚି···। ଛୁଆ ଝିଅରମାନଙ୍କୁ ପୁଣି ତା'ର ଏତିକ ଆଦର । ପହିଲି ତ ତା' ପାଖ ଛୁଉନାହିଁ···ଖାଲି ଏଇ ମାଧୁଆଟା···

ପୀତାମ୍ବର—କାହିଁକି—ମାଧୁରୀ କ'ଣ ଭାଉଜକୁ ପସନ୍ଦ କରୁନାହିଁ ?

ମଝିବୋଉ—ନାହିଁ—ନାହିଁ ପସନ୍ଦ କରିବ ନାହିଁ କାହିଁକି, ସବୁବେଳେ ତ ମତେ କହୁଚି—"ଝୋଲ୍, ଭାଗ୍ୟରେ ଥିଲ ବୋଲି ଏମିତି ବୋହୂଟିଏ ପାଇଲୁ ।" ହେଲେ ତା' କାମଦାମ, ଚାଲିଚଳଣି ଇଏ କ'ଣ କିଛି ଶିଖୁଚି ?

ପୀତାମ୍ବର—ଶିଖିଯିବ ଶିଖିଯିବ । ବୋହୂ ଯଦି ପ୍ରକୃତରେ ଭଲ ହୋଇଥାଏନା, ଦେଖିବ ମାଧୁରୀ ବଳେବଳେ ତାର ବାଟରେ ଟାଣିହେଇ ଚାଲିବ ।

ମଝିବୋଉ—ହଉ, ଆସ, ଆସ ଦେଖିବ ଆ...କେମିତି ତା'ସଜ କରିଚି । (ଦୁହେଁ ଭିତରକୁ ଗଲେ, ଟିକିଏ ପରେ ଗୋଟିଏ ଦିଗରୁ ମାଧୁରୀ ଓ ଅନ୍ୟ ଦିଗରୁ ଖୁବ୍ ତର ତର ହେଇ ଭିକା ଆସିଲା । )

ମାଧୁରୀ—ଭିକା ।

ଭିକା—ହେଇଥି ଦେଈ, ଖାଲି ପାଞ୍ଚ ମିନଟ । ଏଇ ଯାଉଚି ଯାଉଚି ମୁଁ ଫେରଆସୁଚି—ତେଣିକି ଯାହା କହିବ । ଯୋଉଠିକି ପଠେଇବ ମୁଁ ହାଜର ଅଛି । (ଚାଲିଯାଉଥିଲା)

ମାଧୁରୀ—ଶୁଣ ଭିକା । କିଛି କାମ ନଥାଇ ଯେଉଁମାନେ ସବୁବେଳେ ବ୍ୟସ୍ତ, ତୁ ତାଙ୍କର ଭିତରୁ ଜଣେ ।

ଭିକା—ଦେଈ !

ମାଧୁରୀ—ତୁ ଏଇଠି ଠିଆ ହେଇ ରହ ।

ଭିକା—ଦେଈ, ଠିଆ ହେଇ ରହିବ କାହିଁକି ? ମୁଁ ଏଠି ଠିଆ ହୋଇ ରହିଲେ ତେଣେ ଯେ ସମସ୍ତେ ବସି ରହିବେ ।

ମାଧୁରୀ—ବସିରହିବେ ?

ଭିକା—ବସି ରହିବେ ନାହିଁ ତ କରିବେ କ'ଣ ? ଘରେ ପରା ଲୁଣ ନାହିଁ, ଦେଈ—ତେଣେ ସୁଆଶୁ ତରକାରୀ ରାନ୍ଧିବ ବୋଲି ହାତ ଟେକି ବସିଚି । ମା ବି ଡାହିବର କରିବେ ବୋଲି ହାତ ଟେକି ବସିଛନ୍ତି । ବୋହୂ ସାଆନ୍ତାଣୀ ମତେ ପଠେଇଲେ ଲୁଣ ଆଣିବାକୁ ।

ମାଯ୍ନା—ତେବେ ବୋହୂ ସାଆନ୍ତାଣୀଙ୍କ କାମରେ ଏତେ ବ୍ୟସ୍ତ ?

ଭିକା—ନାଇଁ, ଦେଇ…

ମାଯ୍ନା—ଯା—ଆଉ ବକ ବକ ହୋ' ନା—(ଭିକା ଚାଲିଗଲା) ଏ ଆଚ୍ଛା ବୋହୂ ଆସିଲା ଯେ ଘରଯାକ ଲୋକ ସମସ୍ତେ ଯାଇ ତା'ର ପାଖେ ମେଳା ବାନ୍ଧୁଛନ୍ତି ! (ପୀତାମ୍ବର ଆସିଲେ) ବାପା, ତମେ ତେଣେ ଯାଇ କ'ଣ କରୁଥିଲ ?

ପୀତାମ୍ବର—ତୋ ଭାଉଜର ଘରକରଣା ଦେଖୁଥିଲି ।

ମାଯ୍ନା—ଓ !

ପୀତାମ୍ବର—ଆଚ୍ଛା, ଭାଉଜ କେମିତି ? ତୋ ମନ ମାନୁଚି ? ଏଇନେ ତ ଦେଖିଆସିଲି ପହଲିକୁ ପାଖରେ ବସେଇ କ'ଣ ବେଶ କରିଦଉଚି । ପଣୁ, ରଞ୍ଜନ ତ ଭାଉଜ ଭାଉଜ ବୋଲି ପାଣି ପିଉନାହାନ୍ତି । ତୋ ମନକୁ ଭାଉଜ କେମିତି ପାଉଚି ?

ମାଯ୍ନା—ଖୁବ୍ !

ପୀତାମ୍ବର—ମାନେ ?

ମାଯ୍ନା—ସତରେ ବାପା, ଭାଉଜ ଖୁବ୍ ଭଲ । ସାନ ଦିଅରମାନଙ୍କୁ ତ ସ୍ନେହ ଆଦର କରୁଚନ୍ତି—ଶାଶୁ ଶଶୁରଙ୍କ ସେବାରେ ତ ଏତେ ଟିକେ ଊଣା ନାହିଁ—ମତେ ତ ଆଗ ନଖୁଆଇଲେ ନିଜେ ଖାଇବେ ନାହିଁ—ଭାଇଙ୍କ ମନ ତ ଭାରି ଖୁସି । ଆଉ ପୁଣି କ'ଣ ?

ପୀତାମ୍ବର—ହୁଁ, ତା'ହେଲେ ତୋ ବୋଉ ଯାହା କହୁଥିଲା ଠିକ୍ । ବି.ଏ. ପାସ୍ ବୋହୂ ହେଲେ କ'ଣ ହେଲା—ଘରକରଣାରେ କେହି ବାଛିବାକୁ ନାହିଁ । ଏଣିକି ତୋ ପାଳି । ଭାଉଜଠୁଁ ଶାଶୁଘର ଚଳଣୀ ସବୁ ଶିଖିବୁ ।

ମାଯ୍ନା—କ୍ଷମା କର ବାପା, ସେ କାମ ପାଇଁ ସିଏ ଉପଯୁକ୍ତ କି ନା ସେଥିପାଇଁ ଆଉ ଟିକିଏ ପରୀକ୍ଷା ଦରକାର ।

ପୀତାମ୍ବର—ଓ, ଶିଖିବା ଆଗରୁ ନିଜେ ପରୀକ୍ଷକ ହେବୁ ? ଆଚ୍ଛା, ଆଚ୍ଛା, ସେଇଆ ଏବେ ହେଲା…ହଁ, ଭାଉଜ ଘରୁ ଆଜି କୁଣିଆମାଇଁଏ ସବୁ ଆସିବେ…ବୋଉକୁ କହି ସବୁ ବନ୍ଦୋବସ୍ତ କରିବ । (ଚାଲିଗଲେ ।

ପହଲ ଆସିଲା । ଗୁଡ଼ାଏ ଧଳା ପାଉଡ଼ର ମୁହଁରେ ବୋଳା ହୋଇଥିବା ଯୋଗୁଁ ମୁହଁଟା ସଫା ଧଳା ଦିଶୁଛି ।)

ମାଧ୍ବ—କିରେ, ତୁ କ'ଣ ଯାତ୍ରାରେ ଗୌରଚନ୍ଦ୍ର ଚୂଡ଼ାମଣି ପାର୍ଟ କରିବାକୁ ବାହାରି ପଡ଼ିଲୁ ? ମୁହଁଟାକୁ ଏକାବେଳକେ ଚୂନରେ ଧଉଳ ଦେଇ ଆସିଚୁ । ଏ ଇଞ୍ଚେ ବହଳର ଧଳା ପାଉଡ଼ର ତତେ ଦେଲା କିଏ ?

ପହଲ—ଭାଉଜ ।

ମାଧ୍ବ—କାହିଁକି ? ତତେ ଯାତ୍ରା ଦୁଆରୀ ବେଶ କରିବାକୁ ଭାଉଜଙ୍କର ଏ ଦରକ ପଡ଼ିଲା କାହିଁକି ?

ପହଲ—ଅପା, ତୁ ଭାଉଜଙ୍କୁ ଶିଖେଇ ଦେଇଚୁ ?

ମାଧ୍ବ—କ'ଣ ରେ ?

ପହଲ—ଆଜି ଗୋଲାପୀ ପାଉଡ଼ର ଭାଉଜ ନେଇ କୋଉଠି ଲୁଚେଇ ଦେଲେଣି—ମୁଁ ପାଇଲି ନାହିଁ ।

ମାଧ୍ବ—ତୁ ମାଗିଥିଲୁ ?

ପହଲ—ହଁ, କହିଲେ—ଗୋଲାପୀ ପାଉଡ଼ର ଲଗାଇଲେ ମୁହଁ ମଇଳା ଦିଶିବ ।

ମାଧ୍ବ—ହେଇଠୁ ?

ପହଲ—ଏ ଧଳା ଗୁଡ଼ାକ ମୋ ମୁହଁରେ ବୋଳିଦେଲେ, ମୁଁ ଜାଣେ ଏଗୁଡ଼ାକ ମୁହଁ ଲଗା ପାଉଡ଼ର ନୁହେଁ—ଭାଇଙ୍କ ଘିମିରେ ଏ ପାଉଡ଼ର କାଲି ଭାଉଜ ବୋଳିଦେଉଥିଲେ, ମୁଁ ଦେଖିଚି ।

ମାଧ୍ବ—ହଉ, ବେଶ୍ ଭଲ କାମ କରିଚ ମାଗିଖିଆ ବାବୁ, ଏବେ ଯାଅ··· ଭାଇଙ୍କି ଏ ଚୂନ ବୋଳା ମୁହଁ ଦେଖାଇବ । ଯା ଏଠୁ । (ପହଲ ଚାଲିଗଲା)

ମାଧ୍ବ—(ମନକୁ ମନ) ଗୋଲାପୀ ପାଉଡ଼ର ଟିକିଏ ପାଇଁ ଭାଉଜ ପହଲକୁ ମିଛକଥା ଭୁଲେଇ ଦେଲେ ? କାହିଁକି ? କ'ଣ ପାଉଡ଼ର ହେ ସଉଦାକ ଆଣିଛନ୍ତି ବୋଲି···ନା—ପହଲକୁ ଅଧା ଆପଣାର ମନେକରି ଶାସନ କରିବେ ବୋଲି ? (କାବେରୀ ଆସିଲା)

କାବେରୀ—ଆସ ମାଧ୍ବ, ବୋଉ ଡାକୁଚନ୍ତି ଆସ ।

ମାଧ୍ୱୀ—( ଶୁଷ୍କ ହସି ) ଖଗେଂଙ୍କୁ ଲୋକଙ୍କ ମୁହଁରେ ଚିମିଟି ଉଠେ ନାହିଁ
    ଖଞ୍ଜନ—ନଇଲେ ପଦ୍ମଲ ମୁହଁରେ ତମେ ଯେତେ ପିମିଶ ପାଉଡ଼ର ବୋଳିଚ, ଯାତ ଜନ୍ମଯାଏ ତା ମୁହଁରୁ ପିମିଶ ହଟା ହେଇଯା'ନ୍ତା ।

କାବେରୀ—ମୁଁ ପରୁ ତାଙ୍କୁ ଯେତେ କହିଲି—ଆସ ତମ ମୁହଁରେ ମୁଁ ଗୋଲାପୀ ପାଉଡ଼ର୍ ଲଗେଇଦେବି, ସେ ମାନିଲେ ନାହିଁ । ଜିଦ୍ ଧରି ବସିଲେ ଏ ପାଉଡ଼ର ଲଗେଇବାକୁ ।

ମାଧ୍ୱୀ—ପଦ୍ମଲ ଜିଦ୍ ଧରି ବସିଲା ?

କାବେରୀ—ହଁ ।

ମାଧ୍ୱୀ—ତମେ ସତ କହୁଛ ଖଞ୍ଜନ ?

କାବେରୀ—(ଦବିଯାଇ) ଏଇ ସାମାନ୍ୟ କଥାଟାରେ ମୁଁ ମିଛ କାହିଁକି କହନ୍ତି ଯେ···ଆସ । ( ଗୃଲିଗଲା । ମାଧ୍ୱୀ ମୁହଁରୁ କାନ୍ଦୁ ହବୁ ହରହତା ଯେମିତି ଉଭେଇ ଗଲା । )

ମାଧ୍ୱୀ—ଏଇ ଦିନ ବେଇଟାରେ ଯଦି ଖଞ୍ଜନ ମନରେ ଏ ବିଷ ଢୁକିଥାଏ, ତା'ହେଲେ ମୁଁ କହିବି—"ଭଗବାନ, ତମେ ଆମର ଏ ଘର ହତାରୁ ବାହାରେଯାଇ କାଠଯୋଡ଼ି ବନ୍ଧ ଉପରେ ଠିଆ ହୋଇ ମଜା ଦେଖୁଚ ।

## ତୃତୀୟ ଦୃଶ୍ୟ

( କାବେରୀର ଶୟନ-କକ୍ଷ । ସାଜସଜ୍ଜା ବେଶ୍ ରୁଚିକର । ପଲଙ୍କ ଉପରେ ଧୋବ ଫରଫର ଗୃଦରଟିଏ ବିଛା ହୋଇଛି । ଦୃଶ୍ୟ ଆରମ୍ଭରୁ ଦେଖାଗଲା—ପରୁ ଓ ରଞ୍ଜନ ତକିଆ ତଳ, ଟେବୁଲ ଡ୍ରୟର ଇତ୍ୟାଦି ଖୋଜାଖୋଜି କରୁଛନ୍ତି । )

ପରୁ—ପାଇଲୁ ?

ରଞ୍ଜନ—ନା । ଆଜି ସକାଳେ ଏଇ ତକିଆତଳେ ମନିବ୍ୟାଗ୍‌ଟା ଥିଲା—ଏଇନେ ତ ନାହିଁ ।

ପଶୁ—ତ କ'ଣ କରିବା ? ଭାଇ ତ ଭାଉଜ କେହି ନାହାନ୍ତି । ପଇସା କିଏ ଦେବ ?

ରଞ୍ଜନ—ତେଣେ ଚନାବାଦାମବାଲା ପଳେଇବ ଯେ !

ପଶୁ—ପଳେଇବ ? ହେ ଚନାବାଦାମ ( ଡାକି ଡାକି ଦୌଡ଼ି ଚାଲିଗଲା । ତା ପଛେ ପଛେ ରଞ୍ଜନ ମଧ୍ୟ ବାହାରିଗଲା । ପ୍ରାୟ ସାଙ୍ଗେ ସାଙ୍ଗେ ଅନ୍ୟ ଦିଗରୁ ଆସିଲା କାବେରୀ । ସେ ଏମାନଙ୍କୁ ଚାଲିଯିବାର ଦେଖିଛି । ତା ମୁହଁରେ ବିରକ୍ତିର ଭାବ ସୁସ୍ପଷ୍ଟ )

କାବେରୀ—କି ଅସଭ୍ୟ ବର୍ବର ପିଲାଗୁଡ଼ିକ । ଜୋତା ପରା ଏଠି ରଖି ଦେବେ ନାହିଁ···କାହିଁକି ଯେ ଏଗୁଡ଼ାକ ଏ ଘରେ ପୋଷା ହେଉଛନ୍ତି ! (ବିଛଣା ସଜାଡ଼ି ଆଲଣା ପାଖକୁ ଯାଇ ଲୁଗାପଟା ସଜାଡ଼ୁ ସଜାଡ଼ୁ ଦେଖିଲା ମୋହନର ଗୋଟାଏ ପକେଟ୍‌ରେ ମନିବ୍ୟାଗଟା ରହିଛି । ସେଇଟା କାବେରୀ ବାହାର କରି ଆଣିଲା । )

କାବେରୀ—ହୁଁ, ସତେ ଯେମିତି ନବାବ ଯାହେବ । ମନିବ୍ୟାଗ୍ ପୁଣି ପଦାରେ ପଡ଼ିଛି । ( ମନିବ୍ୟାଗ୍‌ରୁ ପଇସା କାଢ଼ି ଗଣୁଥାଏ, ଏତିକିବେଳେ ପୁଣି ରଞ୍ଜନ ଆସିଲା । କାବେରୀ ଚଟ୍ କରି ମନିବ୍ୟାଗ୍‌ଟା ଲୁଚେଇଦେଲା । )

ରଞ୍ଜନ—ଭାଉଜ ?

କାବେରୀ—( ମୁହଁରେ ହସ ଆଣି ) କ'ଣ କି ରଞ୍ଜନ ? ମୁଣ୍ଡ କୁଣ୍ଡେଇବ ? ଇସ୍ ତମ ମୁଣ୍ଡ କି ଅଲରା ହେଇଛି, ଆସ କୁଣ୍ଡେଇଦେବି ।

ରଞ୍ଜନ—ନାହିଁ ମ, ଏଇନେ ମୁଣ୍ଡ କୁଣ୍ଡଉଛି କିଏ ? ତମେ ଆମକୁ ପଇସା ଦିଅ ।

କାବେରୀ—ପଇସା ?

ରଞ୍ଜନ—ହଁ, ଚନାବାଦାମ କିଣିବୁ—ପଇସା ତିନି ଅଣା ଦିଅ ।

କାବେରୀ—ପଇସା କ'ଣ ମୋ ପାଖରେ ଥାଏ । ମନିବ୍ୟାଗ୍ ପରା ତମ ଭାଇ ନେଇ ଯାଇଛନ୍ତି ।

ରଞ୍ଜନ—ଭାଇ ଡାକ୍ତରଖାନାରୁ ଫେରି ଖାଇସାରି ପୁଣି ଗଲେ କୁଆଡ଼େ ?

କାବେରୀ—ମୁଁ ତ ଜାଣିନି । ଟିକିଏ ରୁହ, ଭାଇ ଆସିଲେ ତାଙ୍କ ପଇସା ଦେବେ ।

ରଞ୍ଜନ—ତମ ପାଖରେ ମୋଟେ ପଇସା ନାହିଁ ?

କାବେରୀ—ମୋ ପାଖରେ ଥିଲେ ମୁଁ ପୁଣି ତମକୁ ଦିଅନ୍ତି ନାହିଁ । ( ପରୁ ଆସିଗଲା )

ପରୁ—ରଞ୍ଜନ, ଚନାବାଦାମବାଲା ପଳେଇଲା ।

ରଞ୍ଜନ—ପଳେଇଲା ?

କାବେରୀ—ଯାଉ, ଏତେ ବ୍ୟଗ୍ର କାହିଁକି । ଭାଇ ଆସନ୍ତୁ, ପରେ ବାଦାମ କିଣିବ । (ମନ ଦୁଃଖରେ ଏ ଦୁହେଁ ଗୃଲଗଲେ) ହୁଁ, ଶସ୍ତା ପାଇଛନ୍ତି । ସବୁବେଳେ ଖାଲି ଦିଅ ପଇସା…( ବାହାରେ ମଝିବୋଉ ପ୍ରଭୃତିଙ୍କ ପାଟି ଶୁଭିଲା । କାବେରୀ ଚଟ୍ କରି ଖଟ ଉପରେ ନିଦରେ ଶୋଇବାର ଛଳନା କଲା । ବାହାରୁ କଥା କହି କହି ଘର ଭିତରକୁ ଆସିଲେ ସୀତାବୋଉ, ମଝିବୋଉ ଓ ରାଧା । )

ସୀତାବୋଉ—ଛି, ଛି, ଛି, ଛି । ଏ ଢଙ୍ଗ, ଏ କଥା ଜାଣିଥିଲେ ମୁଁ ମୋଟେ ତା ଦୁଆର ମାଡ଼ି ନଥାନ୍ତି ।

ମଝିବୋଉ—ଏଁ, ବୋହୂ କ'ଣ ଶୋଇପଡ଼ିଲାଣି !

ରାଧା—( କାବେରୀର ମୁହଁ ପାଖରେ ନଇଁପଡ଼ି ) ଭାଉଜ ! ନିଦରେ ଶୋଇଛ ନା କ'ଣ ? ( କାବେରୀ ଧଡ଼ପଡ଼ ହୋଇ ଉଠି ଏମାନଙ୍କୁ ଦେଖି ଜିଭ କାମୁଡ଼ି ପକେଇ, ସଙ୍କୋଚରେ ଖଟରୁ ଓହ୍ଲେଇ ଆସି ଠିଆ ହେଲା । କାବେରୀର ଏ ସଂଯତ ବ୍ୟବହାର ଦେଖି ଏମାନଙ୍କ ମୁହଁ ଉଜ୍ଜ୍ୱଳ ହୋଇଗଲା । )

ସୀତାବୋଉ—( ମଝିବୋଉକୁ ) ଦେଖିଲୁ—ବୋହୂ ଯେ କହିବ ସ୍ୱା'କୁ । ଶୁଅ ମା—ଶୁଅ—ଉଠିଲୁ କାହିଁକି—ଶୁଅ ।

ମଝିବୋଉ—ପିଲାଟା ଦିନଯାକ ଖଟିଖଟି ହାଲିଆ ହୋଇପଡ଼ିଚ । ଝିଅ ଗୁଣମଣି ଅଛନ୍ତି ଯେ, କୁଟା ଖଣ୍ଡିକ ଦି'ଖଣ୍ଡ କରିବେ ନାହିଁ । ଏଇଲଟି ବୋହୂଟା ଭୋରରୁ ଉଠି ତା' ଶଶୁର ପାଇଁ ମୁହଁ ଧୋଇବା ପାଣି ରଖିଥିବ ଯେ, ସେ ଟୋକୀ ସେଇ ପାଣିକି ନେଇ ଦାନ୍ତ ଘଷିବ । କହିଲେ କହିବ କ'ଣ ନା…ପାଣି ନୋଟାରେ କ'ଣ କାହା ନାଁରେ

ମାର୍କା ମଗ୍ନ ହେଉଛ । କ'ଣ କହୁଛ୍ କହ ! ଏ ବୋହୂ ଜାଣି ମୋ ଘରକୁ ଆସି ମୋ କାମରୁ ଅଧେ ତା ହାତକୁ ନେଲଣି ।

ସୀତାବୋଉ—ଶୋଇପଡ଼ ମା···ଥକିପଡ଼ିଥିବୁ, ଶୋଇପଡ଼ । ଆଲୋ ଅପା, ଆମେ ତୋ ଘରେ ଯାଇ ବସିବା ଆ । ( ଯିବାକୁ ବାହାରିଲବେଳେ କାବେରୀ ଆଗେଇ ଆସି ସୀତାବୋଉ ହାତ ଧରି ନେଇ ଖଟ ଉପରେ ବସେଇଦେଲ ) । ଦେଖିଲେ ଅପା, ଏ ଘରକୁ ଆସି ଗ୍ଲଲଗଲେ ଆମ ମନ କାଲେ କଷ୍ଟ ହବ ବୋଲି ତୋ ବୋହୂ କେମିତି ମୋ ହାତ ଧରି ନେଇ ତା ଖଟ ଉପରେ ବସେଇଲଣି । କି ଭାଗ୍ୟ ତୋର ଲୋ ଅପା, ଏଭଳି ସୁନା-ନାକି ବୋହୂଟିଏ ତୁ ପାଇଲୁ !

ମହାବୋଉ—ତମେମାନେ କଲ୍ୟାଣ କରଥା—ତା ସଂସାର ଭଲରେ କଟୁ । ···ବସୁନୁ ଲୋ ରାଧା—ବସ । ( ରାଧା ବସିଲ )···ବସ୍ ମା ବସ୍ । ( କାବେରୀ ଜନ୍ତୁ ଠିଆ ହୋଇଥାଏ । )

ସୀତାବୋଉ—ନିଜ ବୋହୂକୁ ତୁ ଚିହ୍ନି ପାରିଲୁ ନାହିଁ ଅପା । ତୁ ପରା ଠିଆ ହେଇଚୁ ସେ ବସିବ କେମିତି ?

ମହାବୋଉ—ମୁଁ ମରିଯାଉଥାଏଁ ଲୋ—ମୋର ସେ କଥାକୁ ହେଜ ନାହିଁ (ବସିଲେ) । ବସ, ମା ବସ । (କାବେରୀ ବସିଲା)

ସୀତାବୋଉ—ହୁଁ । ନାଁ କ'ଣ ନା, ମୁରଲୀବାବୁ ଦପୋଟିଙ୍କ ବୋହୂ । ଏଇ ବୋହୂକୁ ତୁ ମତେ ଦେଖେଇବାକୁ ନେଇ ଯାଇଥିଲୁ ଅପା !

ମହାବୋଉ—ଆଲୋ ସତେ ବା—ଆମେ ପଞ୍ଚାଏ ମାଇପେ ଯାଇ ଦୁଆର ପିଣ୍ଡାରେ ବସିଲୁଣି, ତୁ କାଲିକାର ବୋହୂଟାଏ—ଲମ୍ବୁଜାଲି ହେଇ ଘର ଭିତରେ ଖଟଟା ଉପରେ ଶୋଇଚୁ !

ସୀତାବୋଉ—ଆଲୋ, ତା ଶାଶୁ ଯାଇ ଯେମିତି ତାକୁ ଦୁଇ ଥର ଠେଲି ଦେଲା ଉଠେଇଲା, ଉଠି ଆସି ଧଡ଼୍‌କିନା କବାଟଟା ଜଞ୍ଜିର ଦେଇ ଦୁଆର ପିଣ୍ଡାରେ ବସିଲା ।

ରାଧା—ସିଏ ଘର କବାଟ ଜଞ୍ଜିର ଦେଇ ପଦାରେ କାହିଁକି ଆସି ବସିଲା, ଜାଣିଚୁ ଅପା ?

ମହାବୋଉ—କାହିଁକି ?

ରାଧା—ଖଟ ଉପରେ ସଫା ଗୁଦର ବିଛାହୋଇଥିଲା ନା, ଆମେ ଯାଇ କାଳେ ମଇଳା କରଦେବୁ—ସେଇଥିପାଇଁ ।

ମହାବୋଉ—ଆଲୋ ସତେ ? ଏଇଥିପାଇଁ ?

ରାଧା—ଆଉ କ'ଣ କି ? ତା ଶାଶୁ ପରା ତାକୁ ମୁଦ୍ଦୁ ମୋଡୁଥାଏ ।

ମହାବୋଉ—ହଁ ! ବି. ଏ. ପାସ୍ ବୋହୂ, ତାଙ୍କର···

ସୀତାବୋଉ—ଥାଉଲେ, ଆଉ କାହାର ଯେମିତି ବି. ଏ. ପାଶ୍ ହେଇନାହିଁ କି ଆଉ କାହା ବିଛଣାରେ ସଫା ଗୁଦର ପଡ଼ି ନାହିଁ । ଚେହେରାଟା ଯେଉଁ ଅପୂରୁବ—ନହକା କଣି ! ଗୁଣ ତ ଆଖିରେ ଦେଖିଲୁ । ମିଛଟାରେ ତା' ଦୁଆରେ ଦ'ପହରର କାଳ ବସି ବସି ଅଣ୍ଟା ପିଠି ଲାଗିଗଲାଣି ଲୋ । (ଅଳପ ଉଠିଲେ) ।

ମହାବୋଉ—ସେଇଠି ଟିକେ ଗଡ଼ପଡ଼ ନୁ ଲୋ ସୀତାବୋଉ···ଖଟ ଉପରେ ଟିକେ ଗଡ଼ପଡ଼ ।

ସୀତାବୋଉ—ହଁ ଲୋ ଅପା, ଆଉ ବସି ପାରବ ନାହିଁ···ହେଲେ ତୋ ବୋହୂ ମତେ ଗାଳଦବ ନାହିଁ ତ ? (କହୁ କହୁ ଶୋଇଲେ ଓ ଗୋଡ଼ଟା କାବେରୀ ହାତ ପାଖରେ ନେଇ ରଖିଲେ । କାବେରୀ ମୋଡ଼ିଦେବାକୁ ଆରମ୍ଭ କଲା ।)

ରାଧା—ଗାଳଦବ କ'ଣ ଲୋ ସୀତାବୋଉ ଅପା, ଭଉଜ ପରା ହେଇ ତତେ ମୋଡ଼ିବସିଲେଣି ।

ସୀତାବୋଉ—ଆଲୋ ତୁ କ'ଣ ମୋଡ଼ିବୁ ?···ତୋ' ହାତ ତ ପାକଲା ହେଇନାହିଁ ଲୋ—ଥାଉ । ନାହିଁ ଲୋ ଅପା, ମୋ ଗୋଡ଼ ସେ ଛାଡ଼ିବ ନାହିଁ ।···ଆହା ହା, ମୁଁ ମରିଯାଉଥାଏଁ ଟି ! ମୋ ମା ପରା କଏ ହବ ଲୋ—ଉଡ଼ିଯାଉଥିଲେ ସୁବନ ଚଢ଼େଇ ଧରିଆଣି କଏ ଦବ ଲୋ !

ମହାବୋଉ—ହଉ, ଠାକୁରେ କରନ୍ତୁ ସବୁଦିନେ ଏଇ ମନ ତାର ଥାଉ—
ଏମିତି ଗୁଣର, ବୋଲର ହୋଇ ଏ ନାବ ସେ ଚଳେଇ ନଉ ।

ସୀତାବୋଉ—ଆମ ଗାଁରେ ସବୁ କହୁଥିଲେ ମହାବୋଉ ପାଠୋଇ ବୋହୂ କରୁଚି···ମନ ମାନିଯିବ ଯେ; ହେଲେ ପାଠର ଗୁଣ କେମିତି ବିକଶେ, ଏ ଆଖି ଏଠି ଦେଖିଲି ।

ମହାବୋଉ—ଇଏଁ ତ ଗଲା ବୋହୂ କଥା । ପୁଅକୁ ଦେଖୁଚୁ ତୁ ? ଆଉ ଆଗର ସେ ଫାଙ୍ଗୁଲା ଢଙ୍ଗ ଅଛି ? ମନ କେମିତି ଘର ଧରଲାଣି ?

ସୀତାବୋଉ—ଧରବ ନାହିଁ ! ଇଏଁ ସବୁ ଅନେକଶତ ଫାନ୍ଦଲେ । ସେ ଫାନ୍ଦରୁ ପୁଣି ବର୍ତ୍ତିବ କିଏ ?

ମହାବୋଉ—ଏଣିକି ମୋତେ ଖାଲି ମାଧୁରୀର ଚିନ୍ତା ଲଗିଲା । କେମିତି ସେ ହାତକୁ ଦି'ହାତ ହବ ।

ମାଧୁରୀ—(ଆସୁ ଆସୁ) କାହିଁକି ଲୋ ବୋଉ, ମୋର କ'ଣ ଆଉ ଗୋଟିଏ ହାତ କଟିଗଲା ଯେ, ମୁଁ ହାତକୁ ଦି' ହାତ ହେବ ? ଏଇ ସବୁ ମୋର ଦୁଇଟାଯାକ ହାତ ବିଦ୍ୟମାନ ।

ସୀତାବୋଉ—ଆଲୋ, ଇଏ ତ ଗୋଟାଏ କଥାକୁ ନଥା—ଏ କଥାକୁ ଏଇ ଜବାବ ଦିଅନ୍ତି ।

ମାଧୁରୀ—କଥା ସବୁ କିଛି ନାହିଁ ମାଉସୀ, ନଥା ଆସିବ କୋଉଠୁ ? ମୁଁ ସବୁ ମୂଳରୁ ନାହିଁ କରୁଚି—ବାହା ହେବିନି ।

ରାଧା—ମାଧୁରୀଅପା କଥା ଶୁଣୁଚୁଟି ସୀତାବୋଉ ଅପା ?

ସୀତାବୋଉ—କି ମିଳିବ ବା ସେ କଥାରୁ ? ଆଉ ମାସ ଛ'ଟା ଯାଉ, ଦେଖିବୁ ଲୋ—ତାର ଏଇ ଭାଉଜକୁ ଦେଖି ଦେଖି ବାହା ହବାପାଇଁ ବଳେ ତା' ମନ ହାଇଁପାଇ ହବ । ଆଲୋ ରୂପ ତ ପାଇଚୁ—ଯା' ଭଳି ଖାଲି ଗୁଣର ହେଲେ···

ମାଧୁରୀ—ଏ ଜନ୍ମରେ ନୁହେଁ ମାଉସୀ, ଏ ଜନ୍ମରେ ମୁଁ ଭାଉଜଙ୍କ ପରି ଗୁଣର ହେଇପାରିବିନି, କି ବାହା ହେଇପାରିବିନି । ଆଚ୍ଛା, ଏଠି ଏସବୁ କି ବ୍ୟବସ୍ଥା ଚାଲିଚି···

ସୀତାବୋଉ—କ'ଣ ବା ?

ମାମୁ—ଭାଉଜଙ୍କୁ ଏ ଦଣ୍ଡ ଦିଆଯାଇଚ କାହିଁକ ? ତମେ କାହାର କଣ କରୁଥିଲ କ ମାଉସୀ, ସେ ଏମିତ ମନଧ୍ୟାନ ଦେଇ ତମର ପଦସେବା କରୁଚନ୍ତ ?

ରାଧା ତୁ କ କଥା କହୁଚୁ ବା ମାମୁ ଅପା ? ଗାଁକୁ ଗଲେ ଦେଖନ୍ତୁ—ବୋହୂଗୁଡ଼ିକ କେମିତ ସକାଳୁ ସଞ୍ଜଯାଏ ଶାଶୁ ନଣନ୍ଦ ଯା' ଯାଉଳା ସମସ୍ତଙ୍କୁ ମୋଡ଼ିବାରେ ଲଗିଛନ୍ତ ।

ମାମୁ—ଯା' ପରେ ତୋ ପାଳ ପଡ଼ିବାର ବରାଦ କରୁଚୁ କ ?

ସୀତାବୋଉ—ତୁ ତୁନିହଉଚି ମାମୁ !

ମାମୁ—କାହିଁକ ? ଭାଉଜ ପାଟି ନ ଫିଟେଇ ତୁନି ହୋଇ ତମକୁ ମୋଡୁଚନ୍ତ ବୋଲ, ତମେ କଣ ଭାବୁଚ ମାଉସୀ, ଭାଉଜଙ୍କ ମନ ଭିତରଟା ତୁନି ହୋଇ ରହୁଚ ? ମୋଟେ ନୁହେଁ । ସେ ମନ ଖୁସିରେ କେବେ ଏ କାମ କରୁ ନଥିବେ ।

ସୀତାବୋଉ—ଆଲେ ଅପା, ଦେଖୁଚୁ ତୋ ଝିଅକୁ—ଏ ବୋହୂଟା ନାଁରେ ସବୁବେଳେ ଉଡ଼େଇବୁଡ଼େଇ କର କହୁଲା ।

ମହାବୋଉ—ତୁ ଗୃଲଲୁ ମାମୁ, ଖାଇବୁ ଗୃଲ ।

ମାମୁ—ନାହିଁ ବୋଉ, ଆମର ଆଜ ଟି ପାର୍ଟି ଥିଲ···ମୁଁ ଖାଇକର ଆସିଚ—ଆଉ ଖାଇବନାହିଁ ।

ସୀତାବୋଉ—ଆଲେ ରାଧା, ଦେଖିଲୁ ତୋ କାଦେଖି ଭାଉଜ ମୁହଁକୁ—ଆମ ଗାଁ ଧରମା ମାଇପ ମୁହଁ ପର ଦିଶିଯାଉନ ?

ମାମୁ—କାହା ମୁହଁ ପର ଦିଶୁଚ ମାଉସୀ ?

ସୀତାବୋଉ—ଧରମା ମାଇପ ବା···

ରାଧା—ହଁ ଯେ, ହେଲେ ଧରମା ମାଇପ ବର୍ଣ୍ଣ ଟିକଏ କରଧା ଯିବ ।

ସୀତାବୋଉ—ହଁ ବା—ସେଇ ଓଡ଼ଣୋଇଣ-ବିଶ୍—ତା ନଇଲେ ଏକ ଗଢ଼ଣ···

ମାମୁ—ଶୁଣୁଚଟି ଭାଉଜ, ପଦସେବା କରୁଚ ବୋଲ କ ଚମତ୍କାର ତୁଳନାରେ ତମ ରୂପ ବର୍ଣ୍ଣନା କରାହଉଚ ?

ମହାବୋଉ—ଆଲୋ ସୀତାବୋଉ, କୋଉ ଧରମା ବା ?

ସୀତାବୋଉ—ଆଲୋ, ପରମା ପୁଅ ଧରମା ବା । ତା' କନିଆ ମାଇପ—ତୁ କ'ଣ ତାଙ୍କୁ ଦେଖିଥିବୁ କି ? (କହୁ କହୁ ବଟ୍ଟାରେ ପାନଛେପ ପେସିଦେଲ ।)

ମାୟା—ଇସ୍—ଅସଭ୍ୟତାର ଏକାବେଳକେ ଶେଷ ସୀମା ! ସେ ବହୁଣୀ କ'ଣ ହେଲଣି ?

ସୀତାବୋଉ—କ'ଣ ହେଲଣି ବା—ହାତଟାକୁ ତ ନେଇ ଟିକିଏ ପେସିଦେଲ୍...ଏଇଥିରେ କ'ଣ ହେଇଗଲ ? ହଇଲୋ ବୋହୂ, ତୁ ମନ ଦୁଃଖ କରୁଚୁ ? (କାବେରୀ ହସିଦେଲା) ଏଇ ଦେଖ—ଦେଖିଲୁ—ସେ ତୋ ଭଳି ନୁହେଁ ବା...

ମାୟା—ହଉ ହେଲ ଏବେ—ସେ ମୋ'ଭଳି ନୁହନ୍ତି—ତମଭଳି । କିନ୍ତୁ ଏଇ ଗୋଟାଏ ଗୋଡ଼ କ'ଣ ଏମିତି ମୋଡ଼ା ରହିଥିବ—ଦୟାକରି ଆଉ ଗୋଡ଼ଟା ବଦଳାଅ ।

ସୀତାବୋଉ—ଓହୋ, ଏ ଟୋକୀଙ୍କଟ୍ଟିକ ମତେ ଆଉ ଏଠି ରଖେଇଦେବ ନାହିଁ । ଦଉଚି ଲୋ ମା, ତୋ' ହାତ କୁଆଡ଼େ ଘୋଳାହେଇଯିବଣି... ଏ ଗୋଡ଼ଟା ଟିକିଏ ଦେ (କାବେରୀ ଗୋଡ଼ ଘୁଞ୍ଚେଇଲା ନାହିଁ) ଏଇ ଦେଖ, ଗୋଡ଼ ଘୁଞ୍ଚଉନାହିଁ, ଦେଖିଲୁ ! ସତେ ଲୋ ଅପା, ତୋ ବୋହୂର ବଡ଼ କଅଁଳ ହାତ...ବଡ଼ ସୁନ୍ଦର ମୁଠି ମୁଠି ଘଷା ।

ମାୟା—ଆଉ ସେମିତି ବଡ଼ ସୁନ୍ଦର ତମର ଏ ପୋଡ଼ା କାଠପରି ଗୋଡ଼ । ସେଇଥିପାଇଁ ତାଙ୍କର ମୋଟେ ଘୁଞ୍ଚେଇବାକୁ ମନ ହଉନାହିଁ ।

ମହାବୋଉ—ତୁ ଯାଉଚୁଟି ମାୟା ଏ ଘରୁ !

ମାୟା—ତମେ ସମସ୍ତେ ତ ଏଇଠି ଅଛ—ମୁଁ କାହିଁକି ଯାଇଯିବ ?

ମହାବୋଉ—ଦେଖୁନୁ—ସମସ୍ତେ ନିଜ ନିଜ କାମରେ ଲାଗିଛନ୍ତି—ତୋ ଭଳି କେହି ତୁଚ୍ଛାଟାରେ ବକର ବକର ହେଉନାହିଁ ।

ମାୟା—ଗୋଡ଼ ଘଷା, ପାନ ଖିଆ, ପର ନିନ୍ଦା—ଏଇ ଚର୍ଚ୍ଚା ତ ଏଠି ଚାଲିଛି । ଏ କାମ ଯିଏ ନ କରିବ ସିଏ ମଣିଷ ନୁହେଁ ।

ସୀତାବୋଉ—ଅକଲରେ ତ ପଡ଼ଯାଇଚ ଲୋ ଝିଅ—ବୋହୂଟା ତ ଗୋଡ଼ ଘୁଡ଼ ନାହିଁ—ଯାହା କହିବାର କହିଯା !

ମଣ୍ଟାବୋଉ—(ରାଗିଯାଇ) ମାଗ୍ନା !

ମାଗ୍ନା—ଯାଉଚ ବାବା, ଯାଉଚ । ଏ ଦୃଶ୍ୟ ଦେଖିବାର ସଉକ ମୋର ଆଉ ନାହିଁ—ମୁଁ ଯାଉଚ । (ଚାଲିଗଲା)

ରାଧା—ଆଲୋ ହେ ଅପା, ଆଜି ପରା ଆମେ କଟକ ଚଣ୍ଡୀ ଯାଇଥାନ୍ତେ ଲୋ—

ମଣ୍ଟାବୋଉ—ଆଲୋ ସତେଲୋ···ମୋର ତ ମୋଟେ ମନେନାହିଁ ! ଆଲୋ ସୀତାବୋଉ, ଆ—ଦିନ ଥାଉଁ ଥାଉଁ ଯେମିତି ଫେରିଆସିବା ।

ସୀତାବୋଉ—କଟକ ଚଣ୍ଡୀ ଯିବା ? (କୁଣ୍ଠାର ସହିତ) ହଉ ଚାଲ । ଦେ'ଲୋ ମା ଦେ, ଏ ଗୋଡ଼ରେ ଟିକେ ହାତ ମାରି ଦେ । ଗୋଟାଏ ଗୋଡ଼ ପରା ହିଅନ୍ତି ନାହିଁ ଲୋ···ହଁ ଆଉ ।

(ତିନହେଁ ଚାଲିଗଲେ । କାବେରୀ ବିରକ୍ତରେ ସେଇଠି ବସିରହିଥାଏ । ଆସିଲା ମୋହନ, କାବେରୀର ରାଗ ଦ୍ୱିଗୁଣ ବଢ଼ିଗଲା ।)

କାବେରୀ—ମୋଡ଼ି ମୋଡ଼ି ମୋ ହାତ ବିନ୍ଧିଲଣି ! ତେବେ ବି କହୁ ନାହାନ୍ତି ଉଠ୍ ବୋଲି । ଏମିତି ମୋଡ଼ାଖାଇଲାବାଲା ଏମାନେ ହୋଇଚନ୍ତି ?

ମୋହନ—ମୋଡ଼ିଦବାକୁ ତମକୁ କହୁଥିଲା କିଏ ?

କାବେରୀ—କିଏ କହିବ କ'ଣ ମ—ଏଠିକି ତ ଆସିଲେ—ଖଟ ଉପରେ ଶୋଇ ଅଳସ ଭାଙ୍ଗିଲେ···ଆଉ ତୁନି କରି ମୋ ଆଡ଼କୁ ଗୋଡ଼ଟା ବଢ଼େଇଦେଲେ···ମୁଁ ମୋଡ଼ି ନ ଦେଇ କଣ ମୁରବୀବାବୁଙ୍କ ବୋହୂ ପରି ନିନ୍ଦା ଶୁଣିଥାନ୍ତି ?

ମୋହନ—ଏଠି ବୋଉ ଥିଲା—ମାଗ୍ନା ଥିଲା—କେହି କିଛି କହୁନଥାନ୍ତି ?

କାବେରୀ—ମାଗ୍ନା କହିଲେ ଯେ—ହେଲେ ମାଗ୍ନାଙ୍କ କଥାରେ କ'ଣ ମୁଁ ଏ ଗୋଡ଼ ଘୁଡ଼ି ଆର ଗୋଡ଼ ମୋଡ଼ିଥାନ୍ତି !···ତା'ହେଲେ ତ ମାଗ୍ନା ଗଡ଼ ଜିତିଯାଇଥାନ୍ତେ ।

ମୋହନ—କ'ଣ ଏବେ କହୁଚ ତୁମେ ?

କାବେରୀ—ଏ ଘରକୁ ତ ପୋଇଲ୍ ହୋଇ ଆସିଚ—କହିବ ଆଉ କ'ଣ ? ହୋଇଚି ଦେଖ, ଏ ବିଛଣା କ'ଣ ହୋଇଚ ?

ମୋହନ—ଇସ୍ ! ଏ ପାନଛେପଗୁଡ଼ାକ ଏଠି ବୋଳିଲା କିଏ ? ଏଗୁଡ଼ାକ କ'ଣ ଜଙ୍ଗଲରୁ ଧରା ହୋଇ ଆସିଚନ୍ତି ?···(ଡାକିଲ) ବୋଉ···

କାବେରୀ—(ବାଧାଦେଇ) ଖୁବ ବୁଦ୍ଧି ତମର ! ମୋର ଆଗରେ ସେ ପାନ ଛେପ ବୋଳିଛନ୍ତି···ଆଉ ତମେ ହେଇ କଥା ଯାଇ ବୋଉଙ୍କ ଆଗରେ ଗୁହାରି ହବ ? ବୋଉ ସେଇଠୁ କହିବେ କ'ଣ ନା···ବୋହୂ ପୁଅକୁ ଶିଖେଇଦେଲା । ଥାଉ—ଏ ଚଦରଟା ଉଠେଇ ନେଇ ମୁଁ ଆଉ ଗୋଟାଏ ଧୋବ ଚଦର ପକେଇଦଉଚି ।

ମୋହନ—ବ୍ୟାଗଟା ତମେ ରଖିଚ ?

କାବେରୀ—ମୁଁ ରଖିଚ ମାନେ ? ଭାଗ୍ୟକୁ ମୋ ଆଖିରେ ପଡ଼ିଲା, ନଇଲେ ଭିକା କେତେବେଳେ ଘର ଝାଡ଼ିବା ବାହାନାରେ ଆସି ତା' ଦେଖିଲା କାମ କରିଦେଇଥାନ୍ତା ।

ମୋହନ—ନା—ନା—ଭିକା ସେମିତିକା ନୁହେଁ । ହଁ, ପିଲାଏ ତୁମକୁ ଚନାବାଦାମ ପାଇଁ ପଇସା ମାଗିଲେ ପରା ? ତମ ପାଖରେ ତ ବ୍ୟାଗଟା ଥିଲା—ତମେ ସେମାନଙ୍କୁ ମନାକରିଦେଲ କାହିଁକି ?

କାବେରୀ—ବାଃ, ତାଙ୍କର ଆଗରେ ବ୍ୟାଗଟା ମୁଁ ଖୋଲିଦେଇଥାନ୍ତି, ଆଉ ତାଙ୍କ ମନଇଚ୍ଛା ସେ ଯାହା ପାରିଥାନ୍ତେ ନେଇ ଯାଇଥାନ୍ତେ । ଦେଖିଲନି, ଉକିଆ ତଳେ ଯାହା ପଇସା ଥିଲା ସକାଳେ କେମିତି ହରୁ ଝାଡ଼ିଝୁଡ଼ି ନେଇଗଲେ !

ମୋହନ—ପିଲାମାନଙ୍କୁ ଆଉ କେମିତି ନାହିଁ କରିବ କହିଲ ?

କାବେରୀ—ମୁଁ ଯାହା ଦେଖୁଚି, ଏ ମନିବ୍ୟାଗରେ ଏକା ତୁମ ପଇସା ନୁହେଁ —ଏ ଘରଯାକର ସମସ୍ତଙ୍କ ରୋଜଗାର ଏଥିରେ ଜମା ରହୁଚି । ଆଉ ଯିଏ ଯେତେବେଳେ ପାରୁଛନ୍ତି ଉଠେଇ ନଉଛନ୍ତି । ସେ ମାଙ୍କୁ ଖଣ୍ଡିକ ତ କମ୍ ନୁହନ୍ତି ! ତାଙ୍କ ଆଖି ଦି'ଅଣା ଚାରି ଅଣାରେ ନ ଥାଏ— ଏକାବେଳେ ଦି'ଟଙ୍କା ଚାରି ଟଙ୍କାରେ···(ବାହାରକୁ ଚାହିଁ) କେଜାଣି

ଲେ ମା···ମୋ କଥା ତାଙ୍କ କାନରେ ପଡ଼ିଲେ ମତେ ତଣ୍ଟିଆ ମାରି ଏ ଘରୁ ବିଦାକରିଦେବେ । ସବୁ କଥାରେ ମତେ ଧରି ପକେଇ ଦବାକୁ ସେ ଯେମିତି ଜାଗିଥିଆରି ହୋଇ ବସିଚନ୍ତି ।

ମୋହନ—ବ୍ୟାଗଟା କଣ ହେଲା ?

କାବେରୀ—ଏଣିକି ଏମିତି ବଡ଼ଲୋକି ଦେଖେଇ ତମେ ପକେଟ୍‌ରେ ଏତେ ଟଙ୍କା ରଖି ପାରିବ ନାହିଁ । ଟଙ୍କା ମୋ ପାଖରେ ରହିବ । ତମର ଯାହା ଦର୍କାର ହଉଥିବ, ମୋଠୁଁ ମାଗିନଉଥିବ, ବୁଝିଲ ! ଆଉ ପିଲାଏ ତୁମକୁ ପଇସା ମାଗିଲେ ତମେ ମୋ ପାଖକୁ ପଠାଇ ଦେବ—ଆଉ ମତେ ମାଗିଲେ ମୁଁ ତମ ପାଖକୁ ପଠାଇଦେବି । (ମୋହନ ମୁହଁରେ ଅର୍ଥପୂର୍ଣ୍ଣ ହସ)ହସୁଚ କ'ଣ ମ, ସବୁ କଥାରେ ଏମିତି ପଇସା ଖର୍ଚ୍ଚ କରି ବସିଲେ ସେମାନଙ୍କର କ୍ଷତି—ତମର ବି କ୍ଷତି—ବୁଝିଲ ?

ମୋହନ—ବିଛଣା ଚଦ୍ଦର ମଇଳା ହେବାଠୁଁ, ମନିବ୍ୟାଗ୍ ରଖିବା ପର୍ଯ୍ୟନ୍ତ ସବୁ କଥା ବୁଝିଲି । ହେଲେ ବାହା ହବାର ମାସ ଗୋଟାଏ ଅଧେରେ ଝିଅମାନେ ଯେମିତି ଧଳାକୁ କଳା କରିବା ବିଦ୍ୟା ହାସଲ କରନ୍ତି, ହେତକ ବୁଝି ପାରିଲିନାହିଁ ।

କାବେରୀ—ସେକଥା ତୁମେ ଝିଅ ହୋଇଥିଲେ ବୁଝି ପାରନ୍ତ । ଆଉ ଇଏ ମୋଟେ କଳାକୁ ଧଳା କରିବା ବିଦ୍ୟା ନୁହେଁ । ଇଏ ହେଲା ଅସଲ ଘରକରଣା ବୁଦ୍ଧି । ବରକନ୍ୟା ବିଦା ହେବା ଆଗରୁ ଆମ ଘରେ ମୋ' ବୋଉ ତମକୁ ପାଖରେ ବସେଇ ଯେତେ କଥା କହୁଥିଲା, ସବୁ କ'ଣ ଭୁଲିଗଲ ?

ମୋହନ—ନା, ନା, ଭୁଲିନି ! କିନ୍ତୁ···

କାବେରୀ—ହେଇଟି, ଗୁରି ଖାଇରେ ଘର । ଭାଗ ବଣ୍ଟା ହେଲେ ଏ ଘର ବାଡ଼ ଚେନାଏ ଚେନାଏ ପଡ଼ିବ । ତମ ନିଜର ତ ପୁଣି ଘର ଖଣ୍ଡେ କରିବା ଦର୍କାର । ଏଇ ଦିନୁ ଦି'ପଇସା ନ ଜମେଇଲେ କରିବ ବା କେମିତି ? ମୋ ବୋଉ ଏଇ କଥା ତୁମକୁ କହୁଥିଲା—ଆଉ ମୁଁ ବି ସେଇଆ କହୁଚି ।

ମୋହନ—ବାପା ବୋଉଙ୍କ କଥା ତମେ ବୋଧହୁଏ ଏକାବେଳକେ ଭୁଲିଯାଉଚ କାବେରୀ ?

କାବେରୀ—ମୋଟେ ନୁହେଁ । ମୁଁ ବି. ଏ. ପାସ୍ କରିଚି । ସ୍ତ୍ରୀ କରିଥିଲେ ହାକିମଙ୍କ ମନ ନେଇ ଚଳିଥାନ୍ତି । ଆଉ ଏଠି ଶାଶୁ ଶଶୁରଙ୍କ ମନ ନେଇ ଚଳିପାରିବି ନାହିଁ ? ତୁମେ ମୋ କଥା ଅନୁସାରେ ଚାଲି—ଦେଖିବ ଆମ ନାଆ ଠିକ୍ ଚାଲିଥିବ । ଆଉ ଶାଶୁ ଶଶୁର ସାଇଭାଇ ସମସ୍ତେ କହୁଥିବେ—ଏମିତି ବୋହୂ ଭାଗ୍ୟରେ ଥିଲେ ମିଳେ । (ମୋହନ ମୁହଁ ବୁଲେଇ ଠିଆହୋଇଥାଏ । କାବେରୀ ତା' ପାଖକୁ ଯାଇ, ଏକ-ପ୍ରକାର ତା' ଉପରେ ଢଳିପଡ଼ି, କାନ୍ଧରେ ହାତ ରଖି କହିଲା—)

କାବେରୀ—କ'ଣ, ମୋ କଥା ତମକୁ ଭଲଲାଗୁନି ? ଆରେ ଚୁପ୍ ହେଇ ରହିଲ କାହିଁକି ? କୁହ ।

ମୋହନ—(କାବେରୀ ମୁହଁକୁ କିଛି ସମୟ ଚାହିଁ) ଏ ସୁନ୍ଦର ମୁହଁର କଥା କ'ଣ କେବେ ଅସୁନ୍ଦର ହେଇପାରେ କାବେରୀ ?

କାବେରୀ—ହଉ, ହଉ, ତମେ ଟିକେ ଗଡ଼ିପଡ଼ । ଦିନଯାକ ଖଟି ଖଟି ଆସିଚ—ତମକୁ ଟିକିଏ ମୋଡ଼ିଦିଏଁ ।

ମୋହନ—ମୋଡ଼ିଦେବ ?

କାବେରୀ—କାହିଁକି—ମୋତେ କ'ଣ ମୋଡ଼ିଦେବା ଆସେନାହିଁ ନା କ'ଣ ? ଦେଖିଥିଲ ପରା ଘଣ୍ଟାଏ କାଳ ବସି ମୋଡ଼ିଥିଲି !

ମୋହନ—ଏଇରେ ବାବା—ସଦଳବଳେ ବୋଉ ପୁଣି ଏଣିକି ଆସିଲେଣି ।

କାବେରୀ—ଏଇ ଘରକୁ ଆସୁଚନ୍ତି ନା କ'ଣ ?

ମୋହନ—ହଁ, ତମ ମୋଡ଼ିଦବାଟା ମୁଲତବି ରହିଲା କାବେରୀ, ମୁଁ ଯାଏଁ । ହଁ, ଟଙ୍କା ଦଶଟା ଦବଟି !

କାବେରୀ—ଦଶ ଟଙ୍କା ! ଏତେ ଟଙ୍କା ନେଇ କ'ଣ କରିବ ?

ମୋହନ—ଦିଅନା ।

କାବେରୀ—ହଉ ନିଅ, ହେଲେ ଫେରିଆସି ଏକା ହିସାବ ଦବ । (ଟଙ୍କା ଦେଲା)

ମୋହନ—ଆଚ୍ଛା ! (ମୋହନ ଚାଲିଗଲା, ଏମାନେ ଆସିଲେ)

ମହାବୋଉ—ଆଲେ ମା—ତୋ' ଶଶୁରଙ୍କର କଚେରୀ ଫେରିବା ବେଳ ହେଇଗଲଣି । ଆମେ ଟିକିଏ କଟକଚଣ୍ଡୀ ବାହାରିଚ୍—ତୁ ତାଙ୍କ ଜଳଖିଆ ଖବର ଟିକେ ବୁଝିବୁ ।

ସୀତାବୋଉ—ଆଲେ, ତୁ ନ ରହିଲେ ପରା ଏ ଘର୍ ସେ ବର୍ଷେ ଛ'ମାସ ଚଳେଇଦେବ ଲେ—ତୁ ତାକୁ ହେଳ କରେଇ ଦଉଚ୍ କଣ ? ( କାବେରୀ ଗୃଲଗଲ ) ଏଇ ଦେଖ୍, ଦେଖିଲୁ—ତୋ' ପାଟିରୁ କଥା ନ ବାହାରୁଣୁ କେମିତି ସେ କାମକୁ ଯାଇ ହାଜର ହେଇଗଲଣି ! ( ମାଧୁରୀ ଆସିଲା )

ମାଧୁରୀ—ଏ ବୋଉ···

ମହାବୋଉ—କ'ଣ ?

ମାଧୁରୀ—ଅଚ୍ଛ ବିଶ୍ୱସ୍ତସୂତ୍ରରୁ ସମ୍ବାଦ ପାଇଲି, ତୁ କୁଆଡ଼େ ଖୁବ୍ ଚଞ୍ଚଳ ମାମୁଁ ଘରକୁ ଯାଉଚ୍ ?

ମହାବୋଉ—ହଁ···

ମାଧୁରୀ—କାହିଁକି ?

ମହାବୋଉ—କାହିଁକି କ'ଣ ବା ? ଝିଅ ଜନ୍ମ ହେଇଥିଲି ଯେ ଗୋଟାଏ ଯୁଗ ହେଲଣି, ବାପଘର ମୁହଁ ଦେଖିନି ନାହିଁ । ଘରକୁ ତ ବୋହୂ ଆଣିଦେଲି—ସେ ଘର ଚଳେଇବ । ମୁଁ ଯାଇ ମାସେ ଦି'ମାସେ ବୁଲି ଆସେ !

ମାଧୁରୀ—ଓଃ, ତା' ହେଲେ—ତୁ, ସୀତାବୋଉ ମାଉସୀ, ଆଉ ରାଧା—ସମସ୍ତେ ମିଶି ଏଠୁ ଗୋଟାଏ ଅଡ଼୍ଡ଼ାରେ ବାହାରିବ, ନା ?

ସୀତାବୋଉ—ବୁଝିଲୁ ଲୋ ମାଧୁରୀ, ତୋ' ବୋଉକୁ ମୋ ସାଙ୍ଗରେ ନେଇ ଯାଉଚି, ସିଏ ତୋ' ପାଇଁ ସିଆଡ଼ୁ ବରପାତ୍ର ଠିକଣା କରି ଆସିବ । ···ହଇଲେ ଲୋ ଅପା, ଗୃଲି—ନିଜ ଆଖିରେ ଦେଖିବୁ—ବରଜ୍ ଦାସ କ'ଣ ଅଉ ସେ ବରଜ୍ ଦାସ ହେଇ ଅଛୁ ? ଝନଝନଟା କୋଠା । ତାର ପୁଅ ଗୋବିନ୍ଦା ଏକା—ମାଧୁରୀକୁ ଠିକ୍ ମାନିବ ।

ମହାବୋଉ—କ'ଣ ପଢୁଚଟି ସେ ?

ସୀତାବୋଉ—ହଁ ବା, ଇସ୍କୁଲ ପଢ଼ା ପଢୁଚ ତ । ମାଇନର ନା କ'ଣ··· ?

ମହାବୋଉ—ମାଇନର ? ( ମାୟା ହସିଉଠିଲା )

ସୀତାବୋଉ—ଆଲେ, ପଢ଼ାରୁ କ'ଣ ମିଳିବ ବା ? କୋଉ ପାଠୁଆ ପୁଅ ଭଲ ଗୋବିନ୍ଦାଠୁ ବେଶୀ ରୋଜଗାର କରୁଚ, କହିଲୁ । ତାକୁ ଜ୍ୱାଇଁ କର, ଦେଖିବୁ ।

ମାୟା—ଏ ବୋଉ !

ମହାବୋଉ—କ'ଣ ?

ମାୟା—ତୁ ତା'ହେଲେ ଯାଉଚୁ କେବେ ?

ମହାବୋଉ—ଏଇ ପୂନଅଁ ବାସୀ ।

ମାୟା—ମତେ ସାଙ୍ଗରେ ନବୁ ନାଇଁ ବୋଲି ତ ଜାଣିଶୁଣି ମୋ କଲେଜ ଖୋଲିଥିଲାବେଳେ ଯାଉଚୁ । ···ଭଲ କଥା—ତୁ ଯାଉଚୁ ଯଦି ଯା—ସେଠି ଯେତେ ଦିନ ରହିବୁ ରହ । ହେଲେ ବୋଉ, ମୁଁ ଆଗରୁ କହିଦଉଚି—ମୋର ସବୁ ବ୍ୟବସ୍ଥା ଏଠି କରିଦେଇ ଯା—ମୋର କିଛି ଯେମିତି ଅସୁବିଧା ନ ହୁଏ । ( କାବେରୀ ଆସିଲା ) କ'ଣ କି ଭାଉଜ ? (କାବେରୀ ବାଁହାତରେ ମାୟାର ହାତକୁ ପାନ ଡବାଟାଏ ବଢ଼ାଇଦେଲା) ଓଃ, ବୋଉର ପାନ ଡବା ? ନେ ବୋଉ ନେ ।

ମହାବୋଉ—ଦେଖୁଚୁଟି ସୀତାବୋଉ, ପାନ ଡବାଟା ଆଣିବାକୁ ଭୁଲି ଯାଇଥିଲି ଯେ, ମୋ ବୋହୂ କେମିତି ମୋ ବେଳ ଜଗି କାମ ତୁଲଉଚି !

ମାୟା—ତମ ଡାହାଣ ହାତ କ'ଣ ହେଇଚି କି ଭାଉଜ ? ହଳଦିପାଣି କ'ଣ ବୋଳିପକଉଚ !

କାବେରୀ—ନାଇଁ—ମସଲା ବାଟୁଥିଲି ।

ସୀତାବୋଉ—ଦେଖୁଚଟି ଅପା—ତୋ ବୋହୂ କେମିତି ହାତେ ହାତେ ମସଲା ବାଟିଲିଣି !

ମହାବୋଉ—ଶଶୁର ତା'ର ଜଳଖିଆ ସାଙ୍ଗରେ ତରକାରୀ ଖା'ନ୍ତି ବୋଲି ସାଙ୍ଗେ ସାଙ୍ଗେ ଯାଇ ମସଲା ବାଟିଲିଣି ।

ମାୟା—ତମେ କାଇଁକି ମସଲା ବାଟିଲ ଭାଉଜ ? ଭକା କୁଆଡ଼େ ଗଲା କି ?

କାବେରୀ—ବଜାରକୁ ଯାଇଚ । ତା ହାତ ବନ୍ଧୁଚ ଯେ ବାଟିବାକୁ ମନା କଲା ।

ମାଯ୍ଯା—ତମେ ହବୁଡକ ମସଲା ବାଟିଲ ?

କାବେରୀ—( ମୁହଁ ତଲକୁ କରି ) ହଁ ।

ମାଯ୍ଯା—ବାବ୍‌ବା--

ସୀତାବୋଉ—ଦେଖ୍, ଆଉ କୋଉ ବୋହୂ ହୋଇଥିଲେ ମିଛରେ ତା ମୁଣ୍ଡ ବନ୍ଧୁଚ ବୋଲି ଘର କଣରେ ଶୋଇଥାନ୍ତା ! ଇଏ କେମିତି ଉଁ ନାହିଁ କି ଚୁଁ ନାହିଁ—କାମ ଉଠେଇ ନେଲଣି । ( ଭକା ଆସିଲା )

ଭକା—କ'ଣ ମସଲା ବଟା ହବ ବାହାର କରିଦିଅ ମା, ପୂଝାରୀ ତେଣେ ପରିବା କାଟି ବସିଲଣି । ( କାବେରୀ ପ୍ରମାଦ ଗଣିଲା )

ମାଯ୍ଯା—କରେ ଭକା, ତୋ ହାତ ବନ୍ଧୁଚ ବୋଲି ପରି ରୁ ମସଲା ବାଟିବାକୁ ମନାକଲୁ ଯେ ଭାଉଜ ମସଲା ବାଟିଲେ—ତୁ ପୁଣି ମସଲା ମାଗୁଚୁ କଣ ? ( କାବେରୀ ଚୁଲିଗଲା )

ଭକା—କି ଆଚମ୍ବିତ କଥା କହୁଚ ଦେଇ ? ମୋ ହାତ କାହିଁକି ବନ୍ଧିବ ? ମୁଁ ମନା କରିବ କାହିଁକି ? ମୁଁ ପରା ଏଇନେ ହେଇ ବଜାରରୁ ଆଉଚ । ଆଉ ମସଲା ତ କିଛୁ ବଟା ହେଇନ, ଖାଲି ହଳଦୀ ଟିକିଏ ବଟାହେଇ ଶିଲ ଉପରେ ଥୁଆ ହେଇଚ । ···(ମହାବୋଉ ଓ ସୀତା ବୋଉ ମୁହଁକୁ ମୁହଁ ଅନାଅନି ହେଲେ)

ମାଯ୍ଯା—କ'ଣ ହେଲା ମାଉସୀ—ଭାଉଜ ତ ଚୁଲିଗଲେଣି—ତମେ ଦିହେଁ ଏମିତି ମୁହଁକୁ ମୁହଁ ଅନାଅନି ହଉଚ କାହିଁକି ?

ଭକା—ବେଇଗି ଆସିବଟି ମା—ମସଲା ବାହାରକରିଦେବ । ପୂଝାରୀ ତେଣେ ମୋ ଉପରେ ଖପାହଉଚ ।

ମହାବୋଉ—ତୁ ଯା—ବୋହୂଠୁ ମସଲା ମାଗିନବୁ—ଭଣ୍ଡାର ଘର ଖୋଲାଅଛି । ଆ'ଲେ ସୀତାବୋଉ···( ଗୋଟିଏ ବାଟରେ ଭକା ଓ ଅନ୍ୟ ବାଟରେ ଏ ଦୁହିଁଙ୍କର ପ୍ରସ୍ଥାନ)

ମାଧ୍ୱୀ—( ମୁହଁରେ ଶୁଷ୍କ ହସ ଓ କଣ୍ଠସ୍ୱର ଆହତ ଅଥଚ ବଦ୍ରୂପପୂର୍ଣ୍ଣ ) ହଲଦୀ ଟିକିଏ ବାଟି ମା ମାଉସୀଙ୍କ ଆଗରେ ବାହାଦୂରୀ ନବାପାଇଁ ମୋ ଗାଜୁଏଟ୍ ଭଉଜ ଯଦି ଏ ତାହା ମିଛ କଥା କହିଥାନ୍ତ, ତେବେ ମୁଁ କହିବି—ଭଗବାନ, ତମେ ନିଷ୍ଚୟ କାଠଯୋଡ଼ି ବନ୍ଧ ଗୁଡ଼ି ଯାଇ ଅଧା ନଈରେ ହବଣି !

## ଚତୁର୍ଥ ଦୃଶ୍ୟ

( ଅଳନ୍ଦ—ପୀତାମ୍ବରବାବୁ ଓ ମୋହନ କଥାବାର୍ତ୍ତା ହୋଇ ଆସିଲେ । )

ମୋହନ—ବୋଉ କଥାରେ ତମେ ହଠାତ କେମିତି ରାଜି ହୋଇଗଲ ବାପା—ମୁଁ ବୁଝି ପାରୁନ !

ପୀତାମ୍ବର—କାହିଁକି ? ଏଥିରେ ଅରାଜି ହବାର ଅଛି କ'ଣ ? ଗୋଟାଏ ଲୋକ, ଏତେ ଦିନ ହେଲା ବାପ ଘରକୁ ଯାଇନି—ଯାଉ ଏବେ, କିଛି ଦିନ ବୁଲିଆସୁ ।

ମୋହନ—ମୁଁ କାଲି ଏଇ କଥା ଶୁଣି ମୋଟେ ବିଶ୍ୱାସ କଲି ନାହିଁ, କିନ୍ତୁ ଆଜି ଆସି ଦେଖୁଚି, ଜିନିଷପତ୍ର ସବୁ ବନ୍ଧାହେଲାଣି ।

ପୀତାମ୍ବର—ବୋଉ ତୋ'ର ଯେତେବେଳେ ଯିବାକୁ ବାହାରିଲାଣି, ଆଉ କ'ଣ ସେ ଅଟକିବ ?

ମୋହନ—ତା'ର କିନ୍ତୁ ନ ଯିବା ଉଚିତ ବାପା !

ପୀତାମ୍ବର—କାହିଁକି ? ତୋ'ର କିଛି ଅସୁବିଧା ହଉଚି ?

ମୋହନ—ମୋର କିଛି ଅସୁବିଧା ହଉନାହିଁ ଯେ, ଏ ଘର ତ ପୁଣି ଚଳିବ ?

ପୀତାମ୍ବର—ଓଃ, ତୁ ଏବେ ଏଇ କଥାପାଇଁ ଏମିତି ଅସ୍ଥିର ହଉଚୁ ?···ତୋ' ବୋଉ ପରା କହୁଚି, ଘର ଚଳେଇବାକୁ, ତୋ'ବୋହୂ ଧୁରନ୍ଧର ହେଲାଣି ।

ମୋହନ—ତମେ ଏ କଥା ଶୁଣୁଚ କାହିଁକି ବାପା ? ସିଏ କଣ ଜାଣେ, କଣ ଚଳେଇବ ?

ପୀତାମ୍ବର—ନା—ନା—ନା—ବୋହୂ ଗୁଣ ଯେତେବେଳେ ଶାଶୁ ମୁହଁରେ ଶୁଣାଗଲଣି, ସେଥିରେ ଆଉ କାହାରି କିଛି କହିବାର ନାହିଁ ।

ମୋହନ—ଖାଲି ବୋଉଠୁ ଶୁଣି ତମେ ଏ କଥା କହୁଚ ?

ପୀତାମ୍ବର—କାହିଁକି—ବୋହୂର ନିନ୍ଦା ତ ମୁଁ କାହା ମୁହଁରୁ ଶୁଣିନି, କି ମୋ ଆଖିରେ ତା'ର ମନ୍ଦ କିଛି ଧରାପଡ଼ିନି ।...ବୁଝିଲୁ ମୋହନ, ଏଠି ସମସ୍ତଙ୍କ ମନ ଜଗି କାବେରୀ ଏ ଘର ଠିକ୍ ଚଳେଇନବ—ସେ ବାହାଦୁରୀ ତା'ର ଅଛି ।...ପିଲେ ତ ତା' ବୋଉ ସାଙ୍ଗରେ ଯାଉଚ । ମାଷ୍ଟ୍ରାର କଲେଜ ଅଛି—ନଇଲେ ସେ ମଧ୍ୟ ଯାଇଥାନ୍ତା ।

ମୋହନ—ମାଷ୍ଟ୍ରା ଯେତେବେଳେ ରହୁଚ, ତା'ର ଯଦି କିଛି ଅସୁବିଧା ହୁଏ ?

ପୀତାମ୍ବର—କାହିଁକି--ମାଷ୍ଟ୍ରା କ'ଣ ତା' ଭାଉଜ ସାଙ୍ଗରେ ମିଳିମିଶି ଚଳି ପାରିବ ନାହିଁ ? ତୁ ଦେଖିବୁ ମାଷ୍ଟ୍ରାର କିଛି ଅସୁବିଧା ହବନାହିଁ । ବରଂ କିଛିଦିନ କାବେରୀ ପାଖରେ ଚଳିଲେ ତା'ଠୁଁ ଘରର ହାନିଲାଭ ଦି' କଥା ଜାଣିପାରିବ ।...ଗୋଟାଏ ଲୋକ, କେବେ କୁଆଡ଼େ ବାହାରେ ନାହିଁ । ଏତେ ଦିନ ପରେ ନିଜ ଗାଁକୁ ଯିବାକୁ ମନ କରିଚି—ସେଥିରେ ତାକୁ ବାଧା ଦେବା ଉଚିତ ନୁହେଁ । ହଁ, ଗାଡ଼ି ବେଳ ହେଇଯାଉଚି, ତୁ ଯା—ଦେଖ୍ ତେଣେ କ'ଣ ସବୁ ହଉଚି । (ଚାଲିଗଲେ । ଆସିଲି କାବେରୀ)

କାବେରୀ—(ଖୁସି ମନରେ) ଦେଖିଲ ତ ମୁଁ କ'ଣ କହୁଥିଲି ? ମୁଁ ଜାଣିଥିଲି ପରା, ସେ ଏଥିରେ କେବେ ଅରାଜି ହେବେନାହିଁ ।

ମୋହନ—ଅରାଜି ହେବେ ନାହିଁ ବୋଲି ଜାଣିଥିଲ ଯଦି, ଏମିତି ମନରଖା କରି ବାପାଙ୍କୁ ପଚାରିବାପାଇଁ ମୋ ପାଖରେ ଜିଦ୍ ଧରି ବସିଲ କାହିଁକି ?

କାବେରୀ—ବାଃ, ନପଚାରିଥିଲେ ବାପାଙ୍କ ମନ କଥାଟା ଆମେ ଜାଣିଥା'ନ୍ତେ କେମିତି ? ଏଣିକି ଆମର ଦୋଷ ଛାଡ଼ିଗଲା ।

ମୋହନ—ମୋର କିନ୍ତୁ ଭାରି ଭୟ ହେଉଚି କାବେରୀ, ତମେ ଯେମିତି ଗୋଟାଏ ଅତି ବଙ୍କା ବାଟରେ ପାଦ ଥୋଉଚ ! ଏ କ'ଣ—ତମ ପଣତରେ ଏ…

କାବେରୀ—(ହସି) ଭଣ୍ଡାରଘର ଚାବି—ବୋଉ ବାନ୍ଧିଦେଲେ ।

ମୋହନ—ତମେ ସାଙ୍ଗେ ସାଙ୍ଗେ ରାଜିହୋଇଗଲ ?

କାବେରୀ—ଏଡ଼ିକ ବୋକା ମୁଁ ! କାନ୍ଦି କାନ୍ଦି ତିନିଥର ଫେରେଇଦେଇଚି —ଶେଷକୁ ରାଣ ପକେଇ ବାନ୍ଧିଦେଲେ । (ଟିକିଏ ନମ୍ର ସ୍ୱରରେ) ଏ ଛୁଆଗୁଡ଼ାକପାଇଁ ଭଣ୍ଡାରଘରେ ଯାହା ନଷ୍ଟ ହଉଥିଲା ନା, ବୋଉ ମାସ ଦି'ଟା ତେଣେ ରହି ଫେରିଆସି ଦେଖିବେ—ତାଙ୍କ ହାତରେ କେତେ ଖର୍ଚ୍ଚ ହଉଥିଲା, ଆଉ ମୋ ହାତରେ କେତେ ଖର୍ଚ୍ଚ ହଉଚି ।

ମୋହନ—ବୋଉକୁ ଏଠୁ ବିଦା କରିଦେଇ ପାରିଲେ ତମେ ଯେମିତି ନିଃଶ୍ୱାସ ମାରି ବଞ୍ଚିବ !

କାବେରୀ—ମୋଟେ ନୁହେଁ—ଏ ଘରେ ମୋର ଏକମାତ୍ର ଯାହାଭରସା ହଉଚନ୍ତି ବୋଉ ! ହେଲେ…

ମୋହନ—ହେଲେ—ଏ କିଛିଦିନ ବୋଉର ଅଇଁଠା ଥାଳରେ ଖାଇବା ଦଣ୍ଡରୁ ନିଷ୍କୃତି ମିଳିବ—ନୁହେଁ ?

କାବେରୀ—(ଈଷତ୍ ମୁହଁ ଶୁଖେଇ) ତମେ କ'ଣ ଚାହଁ ମୁଁ ସବୁଦିନେ ଏମିତି ତାଙ୍କ ଅଇଁଠା ଥାଳରେ ଖାଉଥିବ ?

ମୋହନ—କିଏ କହୁଚି ଭଲା ତମକୁ ଖାଇବାକୁ ? ସିଏ ତ କେବେ ତମକୁ ଡାକେ ନାହିଁ ?

କାବେରୀ—ଡାକନ୍ତି ନାହିଁ ସିନା—ଖାଇବସିଲେ ତ କେବେ ମନା କରନ୍ତି ନାହିଁ !…ଏମିତି ମାସେ ଦି'ମାସ ଦୂରରେ ରହିଲେ ଏ ଅଭ୍ୟାସଟା ବଳେ ବଳେ ଛାଡ଼ିଯିବ । ଆଜି ବୋଉ ଏଠୁ ନ ଗଲେ, ଏ ଯୋଉ ରାଧା ଆଉ ସୀତାବୋଉ ଏମାନେ ମୋଟେ ଏଠୁ ଯିବେ ନାହିଁ ।

ମୋହନ—କିନ୍ତୁ ସେ ଦିହେଁ ତ ତମକୁ ଭାରି ପ୍ରଶଂସା କରନ୍ତି !

କାବେରୀ—ପ୍ରଶଂସା କରନ୍ତୁ କ'ଣ ମାଗଣାରେ ? ସେ ବୁଢ଼ୀଙ୍କ ପାଇଁ ଖଟି ଖଟି ମୋ ପ୍ରାଣ ଗଲାଣି । ସେମାନେ ଏଠୁ ଗଲେ ମୁଁ ନିଶ୍ୱାସ ମାରି ବଞ୍ଚିବି ।

ମୋହନ—ବୁଝିଲି···ହେଲେ ଗୋଟାଏ କଥା କାବେରୀ, ବୋଉ ଯାଉଚି ଆଉ ମାୟା ଏଠି ରହୁଚି···

କାବେରୀ—ରହନ୍ତୁ । ବୋଉ ଆଉ ସୀତାବୋଉ ରହିବେ ନାହିଁ ଯେ, ତାଙ୍କ ଆଗରେ ଧରି ପକେଇ ଦେଇ ମତେ ଅପଦସ୍ଥ କରିବେ । ମାସ ଦଶଟା ଏମିତି ଯାଉ—ତା ପରେ ଦେଖାଯିବ । ଏଇଲେ ମା, ଏଣେ ଆଇଲେଣି ! (ମାୟା ବାହାରୁ ଆସିଲା ।)

ମାୟା—ସାହେବଙ୍କ ସାଙ୍ଗରେ ମୁହଁକୁ ମୁହଁ ଯୋଡ଼ି ବିବଙ୍କର କି ମନ୍ତ୍ରଣା ଚାଲିଚି ? ତେଣେ ଯାଇ ଦେଖ ସେମାନେ କ'ଣ କରୁଚନ୍ତି ! ହୃଦାନନ୍ଦ-ବାବୁ ମୋଟର ପଠେଇ ଦେଲେଣି ଯେ !(ମୋହନ ଚାଲିଗଲେ)

ମାୟା—(ବଡ଼ପାଟିରେ) ଏ ବୋଉ ! ବୋଉ···

କାବେରୀ—ଲୁଗାପଟା ପିନ୍ଧୁଛନ୍ତି ପରା !

ମାୟା—କଟକ ସହରରୁ ତ ମଫସଲକୁ ଯିବେ, ଏତେ ବସ୍ତ୍ରବନ୍ଧ ହେଇ କି ଲୁଗା ପିନ୍ଧା ହଉଚି ?···ଏ ବୋଉ !

କାବେରୀ—ଏଇ, ଆଇଲେଣି ! (ମହାବୋଉ ଓ ଅନ୍ୟ ଦୁଇଜଣ ଆସିଲେ, ସମସ୍ତେ କାନ୍ଦ କାନ୍ଦ )

ମହାବୋଉ—କୁଆଡ଼େ ଗଲା ମୋ ମା' ? ( କାବେରୀକୁ ଆଦର କରି ) ମୋ ମା'ଟା, ମୋ' ସୁନାଟା···କାନ୍ଦନା—ମୁଁ ମୋଟେ ବେଶୀ ଦିନ ରହିବି ନାହିଁ !

କାବେରୀ—(କାନ୍ଦି କାନ୍ଦି) ମତେ ତୁମେ ସାଙ୍ଗରେ ନେଇଯାଅ ବୋଉ, ତମକୁ ଛାଡ଼ି ମୁଁ ଏଠି ରହିପାରିବିନାହିଁ !

ମହାବୋଉ—ମୋ ମା'ଟା ପରା—ଏଥରକ ଆସେ । ଆଉ ଥରେ ତତେ ନେଇ ମୁଁ ଆମ ଘରକୁ ଯିବି !···ବୁଝିଲୁ ଲୋ ସୀତାବୋଉ, ଯେତେ ମୁଁ ମନା କରିବି, ହସି ହସି ମୋ ଅଣ୍ଟା ଥାଳରେ ବସିଯିବ । ତା' ପାଟିକି

ଯେମିତି ସେ ଅମୃତ । ଏ ଦୁ'ମାସ ସେତକ ଆଉ ମୋ ଆଖି ଦେଖିବ ନାହିଁ ।

ମାଝୀ—ତୋ ଆଖି ନ ଦେଖିଲେ ଆଉ ଆଖି ଅଛ ଦେଖିବାକୁ । ଗାଡ଼ିକି ଚାଲ ।

ମହାବୋଉ—ଚାଲ ବା, କାହିଁକି ଇମିତି ହଉଚୁ…(କାବେରୀ ଦୁହିଁଙ୍କୁ ପ୍ରଣାମ କଲା ।)

ମହାବୋଉ— } ଅହ୍ୱାସୁଲକ୍ଷଣୀ ହେଇଥା ମା—ଅହ୍ୱାସୁଲକ୍ଷଣୀ ହେଇଥା ।
ସୀତାବୋଉ— }

ରାଧା—ମତେ ମନେ ରଖିବ କାବେରୀ ଭାଉଜ—ଭୁଲିଯିବ ନାହିଁ । ମୁଁ ତମ ନାଁରେ ଗୋଟିଏ ବଣି ପୋଷିବି ।

ମାଝୀ—ଗୋଟାଏ ବଣି ଅମଙ୍ଗଳିଆ—ଦୁଇଟା ବଣି ପୋଷିବୁ । ଗୋଟାଏ ତାଙ୍କ ନାଁରେ—ଗୋଟାଏ ମୋ ନାଆଁରେ—ହେଲେ ଗୋଟାଏ ପିଞ୍ଜରାରେ କେବେ ରଖିବୁ ନାହିଁ ।

ସୀତାବୋଉ—(କାବେରୀକୁ ) ଆ…ମା, ଯାଉଚ ।

ରାଧା—ହେ ସୀତାବୋଉ ଅପା—କାବେରୀ ଭାଉଜକୁ ଧରି ଅସରାଏ କାନ୍ଦୁନବୁ ନାହିଁ ?

ସୀତାବୋଉ—ପୋଡ଼ିଯାଉ ମୋ ମନ ! (କାବେରୀକୁ ଧରି) ମୋ ଗୁଣୁଣୀ ହାତୀ ଲୋ…ମୋ ଚନ୍ଦ୍ରବଦନୀ ଲୋ…କେଡ଼େ ମାୟା ଲଗେଇ ଦେଇଥିଲୁ ଲୋ…ମୋ ଧନମାଳିଆ ଲୋ…

ରାଧା—(ସୀତାବୋଉ ମୁହଁରେ ଲୁଗାମାଡ଼ି) ଥାଉ ଅପା, ଥାଉ !

ସୀତାବୋଉ—(ମାଝୀକୁ ଧରି) ମୋ ସୁନା ଝଡ଼ିକା ଲୋ…

ମାଝୀ—(ଠେଲିଦେଇ) ହଟ୍ ! ସୁନା ଖଡ଼ିକା ଲୋ…ଗାଁ ଗୋବନ୍ଧା ଘାଟରେ ତତେ ବାହା କରେଇ ଦେବି ଲୋ…ଗୋଟାଏ ଫାର୍ଶ ଲଗିଚ ଏଠି । ଜନଗଣନ ଗାଡ଼ିକି ଉଠିଲଣି—ଚାଲ ! (କାବେରୀକୁ ଛାଡ଼ି ସମସ୍ତେ ବାହାରିଗଲେ । କିଛିଏ ପରେ ପଦ୍ମିନ ବାହାରକୁ ଦୌଡ଼ି ଆସିଲା ।)

କାବେରୀ—କ’ଣ ହେଲ ପହଲ, ଗାଡ଼ିରୁ ଓହ୍ଲାଇ ଚାଲିଆସିଲ କାହିଁକି ?

ପହଲ—ତମକୁ ଦଣ୍ଡବତ କରିନଥିଲି । (ମୁଣ୍ଡ ଲଗେଇ ପ୍ରଣାମ କଲା)

ମାମ୍ମା—ପହଲ—(ବାହାରୁ)

ପହଲ—ଯାଉଚି । (ଚାଲିଗଲା, ଟିକଏ ପରେ ମାମ୍ମା ଆସିଲା ।)

କାବେରୀ—(କାନ୍ଦ କାନ୍ଦ ହୋଇ) ମାମ୍ମା !

ମାମ୍ମା—କ’ଣ ହେଲା ଭାଉଜ ?

କାବେରୀ—ଜୋର୍‌କରି ଚାବି ନେଇଯାଇ କାନରେ ବାନ୍ଧି ଦେଇ ଗଲେ—ମୁଁ କ’ଣ ପାରିବ ?

ମାମ୍ମା—ଏଥିରେ ନ ପାରିବାର କ’ଣ ଅଛି ?

କାବେରୀ—ମତେ ଖାଲି ଡର ମାଡ଼ୁଚି ।

ମାମ୍ମା—କିଛି ଡର ନାହିଁ ଭାଉଜ । ମୁଁ ଭଗବାନଙ୍କୁ ଡାକୁଚି, ସେ ଅଧା ନଈରୁ ମୁହଁ ଫେରେଇ ପୁଣି ଏଣିକି ଚାହାନ୍ତୁ ।

କାବେରୀ—ମାନେ ?

ମାମ୍ମା—ମାନେ ପରେ ବୁଝିବ···ଚାଲି ।

## ପଞ୍ଚମ ଦୃଶ୍ୟ

(ରାତି ପ୍ରାୟ ଦଶଟା । ପରୁ ଓ ରଞ୍ଜନ ଗୋଟିଏ ପ୍ଲେଟରେ କିଛି ଚୁଙ୍ଗୁଡ଼ି ମାଛ ଭଜା ଆଣି ଅତି ସନ୍ତର୍ପଣରେ ଖାଇବାକୁ ଲାଗିଛନ୍ତି । ସ୍ଥାନ—ପୂର୍ବର ସେଇ କକ୍ଷ ।)

ପରୁ—ଚଞ୍ଚଳ ଚଞ୍ଚଳ ଖାଇଦେ ।

ରଞ୍ଜନ—ଟାଉଟି ପରି ! ଉଃ ଜିଭ ପୋଡ଼ିଯାଉଚି ।

ପରୁ—ପୋଡ଼ୁ । ପୁଷ୍ପାଖା ପରି ମନାକରିଚି, କାହାକୁ ନ ଦେଖାଇ ଲୁଚେଇ ଲୁଚେଇ ଖାଇଦବାକୁ···

ରଞ୍ଜନ—କିଏ ଦେଖିବ ବୋଲି ପୁଷ୍ପାଖା ଏ କଥା କହିଲା ?

ପରୁ—ଯିଏ ହଉ, ତୁ ଚଞ୍ଚଳ ଖାଇଦେ । (ଖାଇବାକୁ ଲଗିଲେ । କାବେରୀ ଆସି ଏମାନଙ୍କ ପଛରେ ଠିଆ ହୋଇ ଏ ଘଟଣା ଦେଖି ରାଗରେ ଜଳିଗଲ ।)

ରଞ୍ଜନ—ଭାରି ବଢ଼ିଆ ହେଇଚ ।

ପରୁ—ହୁଁ ! ଖାଇଦେ । (କିଛି ନ ଜାଣିଲା ପରି ମୁହଁର ଭାବ ପରିବର୍ତ୍ତନ କରି କାବେରୀ ସାମନାକୁ ଆସିଲ ।)

କାବେରୀ—କଉ ବାବୁମାନେ, ଏ କ'ଣ ଖିଆହଉଚ ?

ପରୁ—ମାଛଭଜା ।

କାବେରୀ—ଏଇନେ ପରା ଭାତ ଖାଇ ଆସିଲ—ପୁଣି ତମକୁ ଭୋକ ହେଲଣି ଯେ ମାଛଭଜା ଖାଉଚ ?

ରଞ୍ଜନ—ଭାତ ଖାଇଲୁ ଯେ ପେଟ ପୂରିଲା ନାହିଁ ।

କାବେରୀ—କାହିଁକି ?

ପରୁ—କାହିଁକି ଆଉ କ'ଣ ? ଡାଲି ତ ପାଣିଆ···ତରକାରୀ ଅଳ୍ପ···

ରଞ୍ଜନ—ହଁରେ ପରୁ ଭାଇ—ଏତକ ଟିକେ ଟିକେ ମାଛ···ଖଣ୍ଡେ ଲେଖାଏଁ ଆଳୁ···ଟିକିଏ ଝୋଳ—ଏଇଥିରେ ପେଟ ପୂରିବ କିମିତି ?

(ହାତରେ ଗ୍ଲାସେ ପାଣି ଧରି ଭିକା ଘର ଭିତରକୁ ପଶିଆସି କାବେରୀକୁ ଦେଖି ଚମକି ଉଠିଲ ।)

କାବେରୀ—କିରେ ଭିକା, ଏମିତି ଚମକି ଉଠିଲୁ କାହିଁକି ?

ଭିକା—ନାହିଁ ମା···

ପରୁ—ଦେ' ଭିକା, ପାଣି ଦେ । (ଦୁହେଁ ପାଣି ପିଇ ଉଠିଲେ)

ଭିକା—ଶୋଇବାକୁ ଯାଉଚଟି ବାବୁ !

ପରୁ—ହଁ । (ଦୁହେଁ ଚାଲିଗଲେ)

କାବେରୀ—ଭିକା, ଡାକ୍ ପୂର୍ବୀକୁ । ଡାଲି କାହିଁକି ପାଣିଆ ହେଇଚ··· ତରକାରୀ କାହିଁକି ଅଳ୍ପ ?

ଭିକା—ପୂର୍ବୀ କ'ଣ କରିବ ମା ! ଆପଣ ଜିନିଷ ହିସାବ କରି ଦଉଚନ୍ତି··· ହିସାବ ମୁତାବକ ତ ରନ୍ଧା ହଉଚି···

କାବେରୀ—ଓ, ଦୋଷ ତେବେ ମୋ'ର ?

ଭିକା—ମୁଁ ଏତେବଡ଼ କଥା କହିବ ମା ?

କାବେରୀ—ସବୁ କଥା ମୁଁ ବୁଝୁଚ ଯେ ! ବୋଉ ଥିଲାବେଳେ ଯେମିତି ମନଇଚ୍ଛା ସବୁ ଜିନିଷ ନଷ୍ଟ ହେଉଥିଲା, ଯିଏ ଯାହାର ହାତଚଫେଇ କରୁଥିଲେ—ଏଇନେ ଆଉ ସେତକ ହେଇପାରୁନି ବୋଲି ମନ୍ତ୍ରଙ୍କ ମନ ଖରାପ । ତତେ ପାଣି ଆଣି ଏଠିକି ଆସିବାକୁ କିଏ କହିଥିଲା ? (ଭିକା ନିରୁତ୍ତର) କାହାକୁ ପଚାରି ଏତେବେଳେ ମୂର୍ଖାମି ପିଲାଙ୍କୁ ମାଛଭଜା ଖାଇବାକୁ ଦେଲୁ ? ଭାତ ଖାଇସାରି ଏଣ୍ଡୁ ତେଣୁ ଜିନିଷ ଖାଇଲେ, ଯଦି ଦେହ ଖରାପ ହୁଏ ?

ଭିକା—ନାଇଁ ମା, ପିଲା ବୟସ ତାଙ୍କର, ଦେଖିନାହାନ୍ତି, ମା ଥିଲାବେଳେ କେମିତି ସେମାନଙ୍କର ଦିନରାତି ଚବିଶ୍ ଘଣ୍ଟା ଚୁଲିପର ପାଟି ଚାଲୁଥାଏ ।

କାବେରୀ—ବଜାରରେ ଆଜିକାଲି ମାଛ ମିଳୁନାହିଁ—ହିସାବ ହେଇ କାଲି ସକାଳକୁ ମାଛଭଜା ହେଇ ରହିଚ । ଆଜି ତ ସେଥିରୁ ଖର୍ଚ୍ଚ ହେଲାଣି, କାଲି ତରକାରୀ ନଅଣ୍ଟ ପଡ଼ିଲେ, ଯିଏ ଘର ଚଳଉଚି, ଦୋଷ ତ ତାର ହବ ।

ଭିକା—ସେଇ କଥା ପରା, ମା ସବୁବେଳେ କହନ୍ତି ପିଲାଛୁଆ ଘରେ ହିସାବ ଧରି ବସିଲେ ଘର ଚଳେ ନାଇଁ ।

କାବେରୀ—କଣ ହେଲା ? ହିସାବ କରି ଘର ଚଳେଇଲେ ଘର ଚଳେନାଇଁ ! ତୁ ମତେ ବୁଦ୍ଧି ଶିଖେଇବୁ ? (ମୋହନ ଆସିଲା)

ମୋହନ—କ'ଣ ହେଇଚି ?

କାବେରୀ—କିଛି ନାଇଁ । ତମେ ଖାଇବ ଚାଲ ।

ମୋହନ—ପାଟିହେଉଥିଲା କାହିଁକି ? ଏ ଅଇଁଠା ପ୍ଲେଟ କାହିଁକି ଏଠି ଥୁଆ-ହେଇଚି ?

କାବେରୀ—ସରୁ ଆଉ ରଞ୍ଜନ ମାଛଭଜା ଖାଉଥିଲେ ।

ମୋହନ—କାହିଁକି ? ରାତି ଆସି ଏତେ ହେଲାଣି, ସେମାନେ କ'ଣ ଭାତ ଖାଇନାହାନ୍ତି ?

କାବେରୀ—ହଁ, ଭାତ ଖାଇଥିଲେ ଯେ, କାଲି ସକାଳ ପାଇଁ ଯୋଉ ଭଜା-
ମାଛ ଥିଲା—ସେଥିରୁ ଦି'ଖଣ୍ଡ ଆଣି ଖାଉଥିଲେ ।

ମୋହନ—ମାନେ ?

କାବେରୀ—ମାନେ କ'ଣ ମ ? ପିଲାଲୋକ ମନହେଲା ଦି'ଖଣ୍ଡ ଆଣି ଖାଇ-
ଦେଲେ—ତମେ କାହିଁକି ଏମିତି ହଉଚ ଯେ— ?

ମୋହନ—ଏମିତି ମନଇଚ୍ଛା ଖାଇଲେ ଦେହ ଖରାପ ହବନାଇଁ ?

କାବେରୀ—ମୁଁ ସେଇ କଥା କହିଲାରୁ ଭିକା କହୁଚି, ମୁଁ ଘର ଚଳେଇଲା ଦିନୁଁ
ପିଲାଙ୍କ ପେଟ କୁଆଡ଼େ ପୂରୁନାଇଁ ।

ମୋହନ—ଏ ଭିକା ଏ କଥା କହୁଚି ?

ଭିକା—ନାଇଁ ବାବୁ...ମୁଁ ତ—

ମୋହନ—ଚୁପ୍ କର୍ । ଭାରି ଦମାକ୍ ତୋର ହେଇଗଲାଣି, ନା ? ଆମ ଘରେ
ପୁଣି ତୁ ମୁରବୀପଣିଆ ଦେଖଉଚୁ ?

ଭିକା—ବାବୁ, ପନ୍ଦର ବର୍ଷ କାଳ ଏ ଘରେ ରହିଲିଣି—ଭିକାକୁ କଣ ଆପଣ
ଚିହ୍ନି ନାହାନ୍ତି ?

ମୋହନ—ହଁ, ହଁ, ଖୁବ୍ ଚିହ୍ନିଚି । ପନ୍ଦର ବର୍ଷ ରହିଲୁଣି ବୋଲି ଯେମିତି
ଆମ ମୁଣ୍ଡ କିଣିନେଇଚୁ । ଇଚ୍ଛା ହଉଚି ତ ରହ...ନାଇଁ ତ କାଲି
ସକାଳୁ ଏଠୁ ବାହାରିଯା । ( ଭିକା ପ୍ଲେଟ୍ ପ୍ରଭୃତି ଧରି ଚାଲିଗଲା । )
କାହିଁକି ତମେ ଏ ଛୋଟଲୋକଗୁଡ଼ାଙ୍କ ସାଙ୍ଗରେ ଏସବୁ ଆଲୋଚନା କର,
କହିଲ ?

କାବେରୀ—ଏଇମାନେ ତ ସବୁ ନବରଙ୍ଗ ଲଗେଇଚନ୍ତି । ମତେ ଲୁଚେଇ
ଏଠି ଆଣି ପିଲାଙ୍କୁ ମାଛଭଜା ଦିଆଯାଇଚି । ଆଜି ସକାଳେ ଯେମିତି
ଗ୍ରେପେଇଜ୍ଞାନସ ବାହାର କରିଦେଲାବେଳେ ଛନଟାଯାକ ଚାକର
ପୁଅଝିଅ ମୁରୁକି ମୁରୁକି ହସୁଥାନ୍ତି, ସେମାନଙ୍କ ମନକୁ ଯେମିତି ମୋ
ବ୍ୟବସ୍ଥା କିଛୁ ପାଉ ନାହିଁ ।

ମୋହନ—ତମେ ସେମାନଙ୍କୁ ମୁହେଁ ମୁହେଁ ଶାସନ କରିଦେଉନ
କାହିଁକି ?

କାବେରୀ—ମୁଁ ସେମାନଙ୍କୁ ଶାସନ କଲେ, ମାମୁଁ ଆଉ ମତେ ଏଠି ରଖେଇ ଦେବେ ? କାଲି ଭେଣ୍ଡି ଖଟା ହୋଇ ନ ଥିଲା ବୋଲି ମାମୁଁ ଭାତ ଥାଳି ପାଖରୁ ଉଠିଗଲେ । ଆଜିକାଲି ବଜାରରେ ଭେଣ୍ଡି ସେର ତ ଟଙ୍କାଏ ଗୃହିଣୀ—ସବୁଦିନେ ଭେଣ୍ଡି ଖଟା ହବ ଏମିତି କ'ଣ କିଛି ଲେଖାଅଛି ? କାଲିଠୁ ମତେ ଆଉ ସେ ଭଲରେ କଥା କହୁନାହାନ୍ତି ।

ମୋହନ—ହୁଁ, ପ୍ରଥମେ ପ୍ରଥମେ ଅବଶ୍ୟ ଭୁଲ ବୁଝିଥିଲି, କିନ୍ତୁ ମୁଁ ଏଇନେ ଯାହା ଦେଖୁଚି, ତମେ ଘର ଚଳେଇଲା ଦିନୁ ଟଙ୍କାଏ କାଗାରେ ଆଠ-ଅଣା ଖର୍ଚ୍ଚ ହଉଚି···ଅଥଚ ଏମାନେ ସମସ୍ତେ ଗୋଟାଏ ମେଳି ବାନ୍ଧି ତମ ବିରୁଦ୍ଧରେ ଯାଉଚନ୍ତି । ଆଚ୍ଛା···ମୁଁ ବୁଝୁଚି ଏ କଥା ।

କାବେରୀ—ହଉ, ଚାଲ, ଖାଇବ ଚାଲ ।

ମୋହନ—ଆଉ ସମସ୍ତେ ଖାଇଲେଣି ?

କାବେରୀ—ସମସ୍ତେ ଆଉ କିଏ ? ବାପା ତ ରାମାୟଣ ଶୁଣିବାକୁ ଯାଇଛନ୍ତି—ଏଗାରଟା ପରେ ଫେରିବେ ।

ମୋହନ—ଆଉ ମାମୁଁ ?

କାବେରୀ—ମାମୁଁ କାହାନ୍ତି ?

ମୋହନ—କାହାନ୍ତି ମାନେ ? ମାମୁଁ ଘରେ ନାହିଁ ? କୁଆଡ଼େ ଯାଇଚି ?

କାବେରୀ—ସେ କୁଆଡ଼େ ଯା'ନ୍ତି ମତେ କେବେ କହିକରି ଯା'ନ୍ତି—ନା, ଆଜି କ'ଣ ନୂଆ ଗଲେ ?

ମୋହନ—ମାମୁଁ ସନ୍ଧ୍ୟାବେଳେ ଘରେ ରହୁନି ଏ କଥା ତମେ ତ ମତେ କହିନ ।

କାବେରୀ—ସେ ତମର ଅଳିଅଳୀ ଭଉଣୀ···ତାଙ୍କ କଥା ମୁଁ ତମ ଆଗରେ ଫେରାଦ ହୁଅନ୍ତି କାହିଁକି ?

ମୋହନ—ରାତି ଅଧି ଏଗାରଟା ବାଜିବ—ଏତେବେଳଯାଏ ସେ ଫେରିନି । ତମେ କ'ଣ ତାକୁ ଅପେକ୍ଷା କରି ବସିଚ ?

କାବେରୀ—ତମ ଭଉଣୀକୁ ତମେ ଚିହ୍ନିନ ଯେ, ପୁଣି ପଚାରୁଚ ?

ମୋହନ—ଇଏ ତ ବଡ଼ ଅନ୍ୟାୟ କଥା । ସିଏ ଯୁଆଡ଼େ ଯାଉ ଫୁର୍ତ୍ତି କରିବେ । ଜଣେ ଲୋକ ଏଠି ଗୃହରକ୍ଷୀ ପରି ସମସ୍ତଙ୍କ ମର୍ଜିଜଗି ବସି ରହିବ । ନା, କାଲି ମୁଁ ବୋଉ ପାଖକୁ ଚିଠି ଲେଖୁଚି । ସିଏ ଆସି ତା ଝିଅକୁ ସମ୍ଭାଳୁ ।

କାବେରୀ—କି କଥା ତମେ କହୁଚ ମ ? ବୋଉଙ୍କୁ ଚିଠି ଲେଖି ଡକେଇ ଆଣିବ କାହିଁକି ? ବୋଉ ଆସିଲେ ଘରଖର୍ଚ୍ଚ କମିବ ନା ମାୟାଙ୍କ ମୁଣ୍ଡ ଭାଙ୍ଗିବ ? ବୋଉ ଦେଢେ଼ ସେତେଦିନ ରହିବା କଥା ନୁହଁନ୍ତି । ମୁଁ ଏଠି ସମସ୍ତଙ୍କୁ ଜଗିବା କରିଦେଉଚି । ଖାଲି ଯାହା ଏଇ ମାୟା···ହଁ ଆଜି ତ ରାତି ଏଗାରଟା ଯାଏ ସିଏ ପଦାରେ ରହିଲେଣି—ତମେ ବାପାଙ୍କ ଆଗରେ କେମିତି ତାଙ୍କୁ ଠିକ୍ ଏ ଧରିପକେଇଦେଇଥିଲ କି···
(ବାହାରେ ମଟର ରହିବାର ଶବ୍ଦ) ଏଇ କିଏ ଆସିଲାଣି । (ଖୁବ୍ ଫିଟ୍‌ଫାଟ୍ ବେଶରେ ମାୟା ଆସିଲା । ଏମାନଙ୍କ ପ୍ରତି ଅଧେ ଦୃଷ୍ଟି ନ ଦେଇ ଉପରକୁ ଚାଲିଯାଉଥିଲା ।)

କାବେରୀ—ମାୟା !

ମାୟା—କ'ଣ ଭାଉଜ ?

କାବେରୀ—ଝିଅମାନଙ୍କର ଏତେ ରାତିଯାଏ ବାହାରେ ରହିବା ଉଚିତ ନୁହେଁ ।

ମାୟା—କ'ଣ କହିଲ ?

କାବେରୀ—ତମ ଭଳି ଝିଅ କ'ଣ···

ମାୟା—ମୋ ଭଳି ଝିଅ ? ହଁ ଅଟକିଗଲ କାହିଁକି, କୁହ, ମୋ ଭଳି ଭଲ ଝିଅ, ନା ମୋ ଭଳି ଖରାପ ଝିଅ ।

ମୋହନ—ମାୟା !

ମାୟା—ଓ, ତମର ବି କ'ଣ କହିବାର ଅଛି ?

କାବେରୀ—ତମେ ବାହା ହେଇନ ମାୟା···

ମାୟା—ହେଲେ ବାହାହେଇ ଲୋକେ ଯୋଉ କୀର୍ତ୍ତି ଅର୍ଜୁନ୍ତି, ସେତିକି ପଦାରେ ନପଡ଼ିବା ଭଲ ।

ମୋହନ—ମାଯ୍ନା !

ମାଯ୍ନା—କହନ, କ'ଣ କହୁଚ ? କୁହ ?

ମୋହନ—ତୁ ଏତେବେଲଯାଏ କୁଆଡ଼େ ଥିଲୁ ?

ମାଯ୍ନା—ଜଣେ ଏଇଥିପାଇଁ ମତେ ଦୋଷୀ ସାବ୍ୟସ୍ତ କରସାରିଲ ପରେ, ଆଉ ଜଣେ ଏ ପ୍ରଶ୍ନ ପଚାରିବାର କିଛି ମାନେ ହୁଏନା ଭାଇ !

ମୋହନ—କାହା ସାଙ୍ଗରେ ଆସିଲୁ ?

ମାଯ୍ନା—ମୋର ଜଣେ ସାଙ୍ଗ । ତାଙ୍କ ଗାଡ଼ିରେ ଆସିଲି ।

ମୋହନ—କଲେଜରେ ପଢ଼ୁଚୁ ବୋଲି ତୋର ମୁହଁ ବଢ଼ିଗଲେଣି, ନା—

ମାଯ୍ନା—କଲେଜରେ ପଢ଼ିଲି ମାତ୍ର ଦୁଇବର୍ଷ ହେଲା । କିନ୍ତୁ ଆଜିକି ଅଠର ବର୍ଷ ହେଲା, ମୁଁ ତମର ଆଦରରେ ସାନଭଉଣୀ ବୋଲି ସମସ୍ତେ ଜାଣନ୍ତି ।

ମୋହନ—ଏସବୁ ସେଇ ସ୍ନେହ ଆଦରର ଫଳ ।

ମାଯ୍ନା—କିନ୍ତୁ ଏ ଫଳ ଠିକ୍ ସେତିକବେଳେ ଫଳେ ଭାଇ, ଯେତେବେଳେ ସ୍ନେହ ଶୁଖିଯାଏ ଆଉ ଆଦର ଦୂରେଇଯାଏ ।

ମୋହନ—(ରାଗିକରି) ମାଯ୍ନା !!

ମାଯ୍ନା—ମୁଁ ତମକୁ କହିଦଉଚି ଭାଇ ! କାନକୁହା କଥାରେ ପଡ଼ି ତମେ ମତେ ଏମିତି ଶାସନ କରିପାରିବ ନାହିଁ ।

ମୋହନ—ଆଚ୍ଛା, ବାପା ଆଜି ଆସନ୍ତୁ, ମୁଁ ବୁଝୁଚି ତୋ କଥା ।

ମାଯ୍ନା—ମୁଁ ବି ପ୍ରସ୍ତୁତ । (କାବେରୀଙ୍କୁ) ବୋଉ ଶୋଇବାଘର ଚାବିଟା କାଇଁ ?

କାବେରୀ—କାହିଁକି ? କ'ଣ ଦରକାର ? ଚାଲ, ମୁଁ ଫିଟେଇଦଉଚି ।

ମାଯ୍ନା—କାହିଁକି ? ମତେ କଣ ଫିଟେଇ ଆସିବନାହିଁ କି ? ଦିଅ, ଚାବିଟା ଦିଅ । (ଚାବି ନେଇ) ସବୁବେଳେ ଚାବିଟାକୁ କାନିରେ ବାନ୍ଧି ନ ବୁଲିଲେ, କ'ଣ ଘର ଚଳଉଚ ବୋଲି ତମକୁ କେହି ଖାତିର କରିବେ ନାହିଁ ? (ଚାଲିଗଲା)

କାବେରୀ—ଦେଖୁଚ ତ ? ବଡ଼ ଝିଅ ବୋଲି ସିଏ ଟିକେମାତ୍ର ଖାତିର କରେ ନା, ତାକୁ ଏମିତି କୁହ କାହିଁକି ? ଆଉ ବେଳରୁ ଦୁଅ କାହିଁକି ?··· କେଜାଣି, ଗୃହିଣୀ ଆଉ ଧାଉଡ଼ଚନ୍ତି କ ନାହିଁ । (ପୀତାମ୍ବର ଆସିଲେ । କାବେରୀ କାନ୍ଦିବାକୁ ଆରମ୍ଭ କଲା ।)

ମୋହନ—ଏ ସବୁ କ'ଣ ହଉଚି ବାପା ?

ପୀତାମ୍ବର—କାହିଁକି କ'ଣ ହେଇଚି ?

ମୋହନ—ରାତି ଏଗାରଟାବେଳେ ମାୟା ଅନ୍ୟ ଲୋକର ଗାଡ଼ିରେ ଫେରିବ ?

ପୀତାମ୍ବର—ଆଜି ତ ହୃଦାନନ୍ଦ ଝିଅ ସୁଧାର ଜନ୍ମଦିନ । ସେଇ ତାକୁ ଡାକି ନେଇଥିଲା । ମୁଁ ତ ବାଟରେ ଦେଖିଚି, ସୁଧା ଆଉ ମାୟା ଗାଡ଼ିରେ ଆସୁଥିଲେ ।···ବୋହୂ କାନ୍ଦୁଚି କାହିଁକି ?

ମୋହନ—ମାୟାକୁ ପଚାର କାହିଁକି କାନ୍ଦୁଚି । ସିଏ ତା'ର ଯାହା କରୁଚି କରୁ, କିନ୍ତୁ ଆମକୁ ଯଦି ସେ ଏମିତି ବେଖାତିର୍ କରି ଅପମାନ ଦେବ, ଆମେ ଆଉ ଏଠି ରହିପାରିବୁ ନାହିଁ ।

ପୀତାମ୍ବର—ମନ୍ତୁ !

ମୋହନ—ଲୋକ ଘର କରିଥାଏ ସୁଖରେ ରହିବାକୁ । କିନ୍ତୁ ଏ ପରିସ୍ଥିତିରେ ଆମେ ଘରଛାଡ଼ି ବାହାରେ ରହିବା ସମସ୍ତଙ୍କ ପକ୍ଷରେ ମଙ୍ଗଳ ।

ପୀତାମ୍ବର—ତୁ ଏ କଥା କହିପାରୁଚୁ ମନ୍ତୁ ! ମାୟା ଯୋଉ ଧରଣର ଝିଅ, ତାକୁ ଅବଶ୍ୟ ସମସ୍ତେ ଭୁଲବୁଝନ୍ତି । କିନ୍ତୁ—

ମୋହନ—ଯାହା କଲେ ସମସ୍ତେ ତାକୁ ଠିକ୍ ବୁଝିବେ—ସେ ସେଇ ବାଟରେ ଯାଉନି କାହିଁକି ? ତା'ର ଏଇ ଗୁଣରୁ ଗୋଟାଏ ଘର ଆସି ଅଚଳ ହେବାକୁ ବସିଲାଣି । (ମାୟା ଆସିଲା ।)

ମାୟା—ବାପା ରାତିଅଧରେ ଘରକୁ ଫେରିଲାବେଳେ ଜଣେ ଆଖିରୁ ଲୁହ ଗଡ଼େଇ, ଆଉ ଜଣେ ତାଙ୍କୁ ଧମକଦେଲେ ଘର ଚଳେନା ।···ନାଁଅ ଭାଉଜ, ତମ ଗୃହ ନାଅ ।···ଯୂଆଁଣ୍ଟ—

ପୀତାମ୍ବର—ମୁଁ ମନ୍ଦିରରେ ପ୍ରସାଦ ପାଇଆସିଚି ମା !

ମୋହନ—ତମେ ଖାଇବ ନାହିଁ ବାପା ?

ମାୟା—ପରୁ, ରଞ୍ଜନ ତ ସବୁଯାକ ମାଛଭଜା ଲୁଚେଇ ଖାଇଦେଲେଣି, ବାପା ଆଉ ଖାଇବେ କ'ଣ ?

ମୋହନ—ମାନେ ?

ମାୟା—ଚାଲ ବାପା, ତମେ ଶୋଇବ ଚାଲ ।

ପୀତାମ୍ବର—ହଁ, ଯାଉଚି ।···ଆରେ ମହା—ତମେ ସବୁ ଖିଆପିଆ କରିବ ଯାଅ । (ମୋହନ ଓ କାବେରୀ ଭିତରକୁ ଗଲେ ।)

ମାୟା—(ସେମାନଙ୍କ ଯିବା ବାଟକୁ ଚାହିଁ, ଦୀର୍ଘଶ୍ୱାସ ସହ) ଭଗବାନ୍, ତମେ ନିଶ୍ଚୟ ବର୍ତ୍ତମାନ ନଈମଝି ଗୁଡ଼ ଆରପାରିରେ ଠିଆହୋଇ ମଜା ଦେଖୁଚ ।

ପୀତାମ୍ବର—କ'ଣ କହିଲୁ ମା ?

ମାୟା—କିଛି ନାହିଁ । ତମେ ଶୋଇବ ଚାଲ ।

ପୀତାମ୍ବର—ତୁ ସୁଧା ଘରକୁ ଯାଇଥିଲୁ ମା, ମହାକୁ କହିନଥିଲୁ ? ସିଏ ତୋ' ବଡ଼ ଭାଇ—

ମାୟା—କିନ୍ତୁ ସେ ଜେଲ୍-ଓ୍ୱାର୍ଡର ନୁହଁନ୍ତି, କି ମୁଁ ସିନ୍ଧିକଟା କଏଦୀ ନୁହେଁ ଯେ, ମୁଁ ଘରେ ପାଦ ଦଉ ଦଉ ମତେ ସେ ସଙ୍ଗୀନ୍ ମୁନରେ ଜେରା କରିବେ ।

ପୀତାମ୍ବର—ଏଇସବୁ କଥା ତୁ କହୁ ବୋଲି ସମସ୍ତେ ତୋତେ ଭୁଲବୁଝନ୍ତି ।

ମାୟା—ଆଉ ତମେ ? ତମେ ବି ମତେ ଭୁଲ୍ ବୁଝ ବାପା !

ପୀତାମ୍ବର—ମୋ' କଥା ତୁ ଛାଡ଼ ମା ! ମୁଁ ମାନୁଚି, ତୋ ଉପରେ ମୋର ଅଗାଧ ବିଶ୍ୱାସ । ମୁଁ ଜାଣେ ତୁ କିଛି ଭୁଲ୍ କରିପାରିବୁ ନାହିଁ ।

ମାୟା—ତା'ହେଲେ ବାପା, ସାରା ଦୁନିଆ ମତେ ଭୁଲ୍ ବୁଝିଲେ କିଛି ଯାଏ ଆସେନା···ତମେ ଚାଲ—

ପୀତାମ୍ବର—ହଁ ମା, ମାଛଭଜା କଥା କ'ଣ ତୁ କହୁଥିଲୁ ?

ମାୟା—କେବେ ଏସବୁ କଥା ତମେ ବୁଝିଚ ନା ଆଜି ବୁଝିବ ?

ପୀତାମ୍ବର—ହଁ···

ମାଧ୍ବୀ—କାଲି ସକାଳେ ପଢେ ଏସବୁ କଥା ବସି ଭାବିବ ବାପା ! ମୁଁ ବିଛଣା ସଜାଡ଼ି ମଶାରି ପକେଇଦେବି, ତମେ ଶୋଇବ ଚାଲ । ପରୁ, ରଞ୍ଜନ ଶୋଇଲେଣି ।

ପୀତାମ୍ବର—ଆଉ ତୁ ?

ମାଧ୍ବୀ—ମୁଁ ବୋଉ ପାଖକୁ ଖଣ୍ଡେ ଚିଠି ଲେଖି ଶୋଇବି ।

ପୀତାମ୍ବର—ବୋଉ ପାଖକୁ ? କ'ଣ ଲେଖିବୁ ?

ମାଧ୍ବୀ—ତମେ ଯାଅ ବାପା, ଶୋଇବ ଯାଅ ।

ପୀତାମ୍ବର—ନାଇଁ ମା, କହ ମତେ କ'ଣ ଲେଖିବୁ ।

ମାଧ୍ବୀ—ତେବେ ଦେଖ, ତମରି ଆଗରେ ଲେଖୁଚି । (ଡ୍ରୟର ଭିତରୁ ଚିଠିଲେଖା କାଗଜ ବାହାରକରି ଲେଖିଲା ।)

ବୋଉ,

ଆଜି ହେଲା ସୋମବାର, ତୁ ବୁଧବାର ଭିତରେ ନଆସିଲେ ମୁଁ ଘର ଛାଡ଼ି ଯାଇ ହଷ୍ଟେଲରେ ରହିବି । ଇତି ।

ମାଧ୍ବୀ

ପୀତାମ୍ବର—ମା !!!

(ମାଧ୍ବୀ ଆହତଦୃଷ୍ଟିରେ ପୀତାମ୍ବରଙ୍କୁ ଚାହିଁଥାଏ)

## ଷଷ୍ଠ ଦୃଶ୍ୟ

(ଅଗଣା । ମହାବୋଉ ଆସିଲେ, ସାଙ୍ଗରେ ପରୁ ଓ ରଞ୍ଜନ ।)

ରଞ୍ଜନ—ନାଇଁ ବୋଉ, ତୁ କହ । ଆମ ପାଇଁ ମାମୁଁଘରୁ କାଇଁକି କିଛି ଆଣିଲୁ ନାଇଁ, କହ ।

ମହାବୋଉ—ଆରେ ମୁଁ ସିନା ଦ'ତିନ ମାସ ରହିଥିଲେ ଦେଖିଚାହିଁ କ'ଣ ଆଣିଥାନ୍ତି· · ·

ପରୁ—ରହିଲୁ ନାଇଁ ?

ମଝିବୋଉ—ରହନ୍ତୁ କେମିତ ? ଅପା ପରା ଚିଠି ଉପରେ ଚିଠି ଲେଖିଲା ।

ରଞ୍ଜନ—ଅପାର କଣ ଯାଉଥିଲା...ସେ କାହିଁକି ଚିଠି ଲେଖିଲା ?

ମଝିବୋଉ—ତମେ ସବୁ ଏମିତି ଝଡ଼ିଯାଉଚ କାହିଁକି କହିବଟି ?

ପରୁ—ମିଛ କଥା । ଆମେ କାହିଁକି ଝଡ଼ିଯିବୁ ?

ରଞ୍ଜନ—ହଁ ଲୋ ବୋଉ, ଆମେ ଝଡ଼ିଯାଇଚୁ । କାହିଁକି ଝଡ଼ିଯାଉଚୁ ଜାଣୁ ?

ମଝିବୋଉ—କାହିଁକି ?

ରଞ୍ଜନ—ଆମକୁ ଆଉ କିଛି ଖାଇବାକୁ ମିଳିଲା ନାହିଁ—ଚନାବାଦାମ—ବାଦ୍‌ମଜା—ଲଜେନ୍‌ସ କିଛି ମିଳିଲା ନାହିଁ ।

ପରୁ—ଭାଇଙ୍କୁ ମାଗିଲେ ସିଏ କହିବେ, ଭଉଜଙ୍କ ପାଖକୁ ଯା...ଭଉଜଙ୍କୁ ମାଗିଲେ କହିବେ, ମନିବ୍ୟାଗ୍ ଭାଇ ନେଇଯାଇଚନ୍ତି ।

ରଞ୍ଜନ—ବୋଉ, ତୁ ଆସିଲୁଣି—ଆଜି ଆମକୁ ଅଠେଏ ଲେଖାଏଁ ପଇସା ଦେ ।

ମଝିବୋଉ—(ଲୁହ ପୋଛି) ହଉ, ଇସ୍କୁଲରୁ ଆସି କିଛି ଖାଇନା, ଯା' ଆଗ ଖାଇସାର, ମୁଁ ପଇସା ଦେବି ।

ପରୁ—ଖାଇବାକୁ ଦିଅ ପୂଝାରୀ (କହି କହି ଦୁହେଁ ଚାଲିଗଲେ ।)

ମଝିବୋଉ—(ବାହାରକୁ ଲକ୍ଷ୍ୟ କରି) ଆଜି ଏତେବେଳଯାଏ କ'ଣ ସ୍ୱା'ଙ୍କର କଚେରୀ କାମ ସରିନାହିଁ ? (ଭିକା ଆସିଲା ।)

ଭିକା—ମା !

ମଝିବୋଉ—ଭିକା, ତୁ ମତେ କହିଲୁ, ପୁଅବୋହୂ ମୋର କାହିଁକି ଘର ଛାଡ଼ି ଚାଲିଗଲେ ?...ତାଙ୍କୁ ସରକାରୀ ଘର ମିଳିଲା ବୋଲି ଗଲେ, ନା ଏଠି କିଛି ଅସୁବିଧା ହେଲା ?

ଭିକା—ମା, ସିଏ ତମ ପୁଅବୋହୂ । ଏ ଘରଦ୍ୱାର ତାଙ୍କର । ମୁଁ ଦି' ଦିନର ଲୋକ...ମୁଁ ଭଲା ଏ କଥାରେ କ'ଣ କହିବି କହିଲ ମା ?

ମଝିବୋଉ—ହଇରେ, ବୋହୂ ମୋର ଭଲରେ ଘର ଚଳାଉଥିଲାଟି ?

ଭିକା—କହିଲ ପରା ! ସିଏ ତମ ବୋହୂ, ଭଲରେ ନଚଳେଇ ମନ୍ଦରେ କାହିଁକି ଚଳେଇବେ !

ମହାବୋଉ—ଆଉ ତା'ହେଲେ ଘରଛାଡ଼ି ଚାଲିଗଲେ କାହିଁକି ? ମୁଁ ପୁଣି ଏଠି ନାହିଁ !

ଭିକା—ଦେଖ କଲେଜରୁ ଫେରନ୍ତୁ, ବାବୁ କଚେରୀରୁ ଆସନ୍ତୁ···ସବୁ ତାଙ୍କଠୁ ଶୁଣିବନାହିଁ···ଏଇ ମା, ବାବୁ ଆଇଲେଣି । ( ପୀତାମ୍ବର ଆସିଲେ )

ପୀତାମ୍ବର—ଆଜି ସନଗାଡ଼ିରେ ଆସିଲ ? ( ପୀତାମ୍ବର କୋଟ୍, ବାଡ଼ି ଭିକାକୁ ଦେଲେ । ଭିକା ନେଇ ଚାଲିଗଲା । )

ମହାବୋଉ—ହଁ । ମହା ବୋହୂକୁ ନେଇ ଘରଛାଡ଼ି ଚାଲିଗଲା, ତାକୁ ଅଟକେଇ ପାରିଲ ନାହିଁ ?

ପୀତାମ୍ବର—ସିଏ ତ ତାଙ୍କର ଗଲେ—ମୁଁ ଆଉ ଅଟକେଇଥା'ନ୍ତି କ'ଣ ?

ମହାବୋଉ—ଏମିତ କ'ଣ ସବୁ ଯା'ନ୍ତି ? ମୁଁ ଘରେ ନାହିଁ—ମୁଁ ତା' ମାଆ—

ପୀତାମ୍ବର—ମହା ପତ୍ର କହିଲା, ଥାଙ୍ଗେ ସାଙ୍ଗେ କ୍ୱାର୍ଟର ଦଖଲ ନ କଲେ ସେ କ୍ୱାର୍ଟର ଅନ୍ୟ ଲୋକ ନେଇଯିବେ ।

ମହାବୋଉ—ନେଲେ ନେଇଥାନ୍ତେ । ନିଜର ଘର ତ ଅଛି—ଘରେ ଭାଇ ଭଉଣୀ ବାପ ମା' ଅଛନ୍ତି—ସମସ୍ତଙ୍କୁ ଛାଡ଼ି ସେ ଯାଇ ସରକାରୀ ଘରେ ରହିଲା—ଏଇ ବୁଦ୍ଧି ତା'ର !

ପୀତାମ୍ବର—ତମେ କଥାଟାକୁ ଭୁଲବୁଝୁଚ । ···ଆଚ୍ଛା, ପୁଅବୋହୂଙ୍କ ସୁଖରେ ବାପ ମା'ଙ୍କ ସୁଖ ତ ?

ମହାବୋଉ—କିଏ ମନା କରୁଚି । ହେଲେ ଏଠି କି ଦୁଃଖଟା ହେଉଥିଲା, ମୁଁ ଟିକେ ଶୁଣେ ?

ପୀତାମ୍ବର—ଆ-ହା ! ସିଏ ଯଦି ଭାବିଲେ, ଆମ ପାଖରୁ ଦୂରରେରହିଲେ ତାଙ୍କର ସୁଖ—ତାଙ୍କର ମଙ୍ଗଳ—ଆମେ ସେଥିରେ ବାଧାଦବା କାହିଁକି ? ଆମ ସ୍ୱାର୍ଥପାଇଁ ସିଏ ଦୁଃଖରେ ରହିବେ—ଏଥି' ମୁଁ ମୋଟେ ଚାହେଁନା ।

ମହାବୋଉ—ହଉ । ସିଏ ମୋ ଭାଗ୍ୟ ! ଆସ, ମୁହଁ ହାତ ଧୋଇବ ଆସ ।
( ଚାଲି ଯାଉଥିଲେ )

ପୀତାମ୍ବର—ଶୁଣ ।

ମହାବୋଉ—କ'ଣ ଆଉ ଶୁଣିବି ? ପୋଡ଼ାଗଲା ଡାଅଣରେ ଆଉ କି ସୁଆଦ ଅଛି ।

ପୀତାମ୍ବର—ମୁଁ ସେ କଥା କହୁନାହିଁ । ମାଆକୁ ଦେଖିବାକୁ କାଲି ସବୁ ଆସିବେ ।

ମହାବୋଉ—କିଏ ଆସିବେ ? ପାଣ କୋଉଠିକାର ? କ'ଣ କରେ ?

ପୀତାମ୍ବର—ପୁରୀରେ ଓକିଲାତି କରେ । ନୂଆ ଓକିଲ । ମହା ତ ଏକାଜିଦ୍ ଲଗେଇଚି, ସେଇଠି ବାହାଘର କରିବାକୁ ।

ମହାବୋଉ—ମହା !

ପୀତାମ୍ବର—କାଲି ସନ୍ଧ୍ୟାବେଳେ ଆସି ଏ କଥା କହିଯାଇଚି ।

ମହାବୋଉ—ବାହା ହବନାହିଁ ବୋଲି ତ କେତେ କେତେ ଭଲ ପାତ୍ରଙ୍କୁ ଫେରେଇ ଦେଲା—ଏଠି କ'ଣ ସେ···

ପୀତାମ୍ବର—ସେଇ କଥା ମହାବୋଉ ! ସେମାନେ ତାଙ୍କର ଆସି ଦେଖିଯା'ନ୍ତୁ—ହେଲେ ମାଆ ଯଦି ରାଜି ନ ହୁଏ, ବାହାଘର ହେଇ-ପାରିବ ନାହିଁ ।

ମହାବୋଉ—ମୁଁ ଠାକୁରଙ୍କୁ ଡାକୁଚି, କେମିତି ସେ ଉଠିଯାଉ । ଘରେ ଗୋଡ଼ ଦଉ ଦଉ ଯେମିତି ମୁଁ ଶୁଣିଚି, ପୁଅବୋହୂ ଯାଇ ବାହାରେ ରହିଲେଣି—ସେତିକିବେଳୁ ମୋ ଜୀବନ ଦି'କଡ଼ା ହେଇଯାଇଚି । ଯାଆଁକୁ ମୁଁ ଆଉ ସମ୍ଭାଳି ପାରିବନାହିଁ—କେମିତି ସେ ଉଠିଯାଉ । ( କହୁ କହୁ ଚାଲିଗଲେ । )

ପୀତାମ୍ବର—କି ଭାଗ୍ୟ ନେଇ ଝିଅଟା ଜନ୍ମ ହେଇଚି, ସମସ୍ତେ ତାକୁ ଭୁଲ୍ ବୁଝିଲେ । ( ପଛେ ପଛେ ଗଲେ । )

## ସପ୍ତମ ଦୃଶ୍ୟ

( ବୈଠକଖାନା । ଭକା ଗୋଟିଏ ରେକାବୀରେ କିଛି ଭଙ୍ଗାପାନ ଓ ମସଲା ଆଣି ଆସିଲା । ପରୁ ଓ ରଞ୍ଜନ ସେଇ ବାଟେ ଯାଉଥିଲେ । )

ପରୁ—ଭକା ! କ'ଣ କରେ ସେ ?

ଭକା—ପାନ ।

ପରୁ—କ'ଣ ଏତେଭଗୁଡ଼ାଏ ପାନ—ଏତେ ମସଲା । ଦେଲୁ ଦେଲୁ, ଗୋଟାଏ ଲବଙ୍ଗ ଦେଲୁ ।

ରଞ୍ଜନ—ମୋତେ ଗୋଟାଏ ଅଳେଇଚ ଦେ—

ଭକା—ଓହୋ, ଏମିତି କାହିଁକି ହଉଚ ? କୁଣିଆଙ୍କ ପାଇଁ ମୁଁ ପାନ, ମସଲା ଆଣିଚି—ତମେ କାହିଁକ ସେଥିରେ ହାତଦଉଚ ?

ପରୁ—କୋଉ କୁଣିଆ କରେ ?

ଭକା—ମାମ୍ବାଦେଈଙ୍କ ବାହାଘର ହବ ପରା···ତାଙ୍କୁ ଦେଖିବାକୁ ଆଇଚନ୍ତି ।

ରଞ୍ଜନ—ହୁଃ, ମାମ୍ବାଅପା ତ ମୂଳରୁ ଘରେ ନାହିଁ—ଆଉ ଇଏ ଆଇଚନ୍ତି ତାଙ୍କୁ ଦେଖିବେ···ଆ'ରେ ପରୁ ଭାଇ ।

ପରୁ—ଚାଲ୍ । ( ଦୁହେଁ ଚାଲିଗଲେ, ଭିତରୁ ଅସ୍ତବ୍ୟସ୍ତ ହୋଇ ମହାବୋଉ ଆସିଲେ । )

ମହାବୋଉ—ଭକା···ଭକା···

ଭକା—ମା ?

ମହାବୋଉ—ମାମ୍ବା କାହିଁ ?

ଭକା—ଛବଦେଈଙ୍କ ଘରେ କେରମ୍ ଖେଳୁଚନ୍ତି ।

ମହାବୋଉ—କ'ଣ କହିବ କହିଲ ! ଦୋହ ଦେଖିବେ ବୋଲି ସେମାନେ ଆସି ପହଞ୍ଚିଲେଣି—ୟା'ର ପରଘରେ ଯାଇ କେରମ୍ ଖେଳ ଲଗିଚି । ହଇରେ ତାକୁ ଡାକିଲୁ କି ?

ଭକା—ଡାକିଲି ପରା ! ସାଙ୍ଗେ ସାଙ୍ଗେ ଆସୁଚନ୍ତି ବୋଲି କହିଲେ ।

ମହାବୋଉ—ବାବୁ କାହାନ୍ତି ?

ଭକା—ହେଇ ମୋଉ ବୁଢ଼ାଟି ପୂର୍ବରୁ ଆସି ନାହାନ୍ତି, ତାଙ୍କର ସାଙ୍ଗରେ ଉପରକୁ ଯାଇଚନ୍ତି ।

ମହାବୋଉ—ହଉ, ତୁ ଏଣେ ଆ—(ଦୁହେଁ ଗୁଲଗଲେ । ଟିକିଏ ପରେ ପୀତାମ୍ବର ଓ ଆଗନ୍ତୁକ ଭଦ୍ରଲୋକ ସଦାନନ୍ଦ—କଥାବାର୍ତ୍ତା ହୋଇ ଉପରକୁ ଆସିଲେ ।)

ସଦା—ସବୁ ହୋଇଯିବ ଆଜ୍ଞା—ଦେଖିବେ ନାହିଁ ମୁଁ ବଞ୍ଚି ଥାଉଁ ଥାଉଁ, ଆପଣ ବଞ୍ଚି ଥାଉଁ ଥାଉଁ ଦେଖିବେ—ସବୁ ହୋଇଯିବ ।

ପୀତାମ୍ବର—ଦେଖାଯାଉ କ'ଣ ହେଉଚ !

ସଦା—ଏ ଜୀବନରେ କୋଉଠି କ'ଣ ହେଇନାହିଁ ଯେ ଏଠି ହବନାହିଁ ବୋଲି ଆମେ ଡରିଯିବା ? ଆପଣ ଶୁଣିଥିବେ ତ ଆଜ୍ଞା ସବୁ ।

ପୀତାମ୍ବର—ଶୁଣିଚ ।

ସଦା—ବହୁ ଲୋକ ଶୁଣିଛନ୍ତି ଆଜ୍ଞା ! ସେବେଳର ଆଖିରେ ଦେଖିଲା ଲୋକ ଆଉ କେଇଟା ବଞ୍ଚିଚନ୍ତି କି ? ହେଲେ—ଏମିତ ଶୁଣାଶୁଣିରେ ଏ ସଦେଇବାବୁ ମୋହରର ଇତିହାସଟା ଗୋଟାଏ ଗପହେଇ ଲୋକଙ୍କ ମୁହଁରେ ଲଗିରହୁଚ···।

ପୀତାମ୍ବର—ପାନ ଖାଆନ୍ତୁ ! ( ଥାଳିଆ ବଢ଼େଇଲେ । )

ସଦା—ଖାଉଚ ଆଜ୍ଞା । (ପାନ ନେଇ) ମତେ ଦଶ ପୂରି ଯେତେବେଳେ ଏଗାର ଗୁଲିଲା, ଗାଁ ଗୁହାଳରୁ ସହର ଫଳା ଶେଷକରି ଓକାଲଙ୍କ ସିରସ୍ତାରେ କଲମ ଧଇଲି ।···ଆଉ ଆଜ୍ଞା, ସେ କାହା ସିରସ୍ତା ଜାଣନ୍ତି ?

ପୀତାମ୍ବର—କାହାର ?

ସଦା—ମିଷ୍ଟର ଦାସ ।

ପୀତାମ୍ବର—ଆପଣ ତାଙ୍କ ସିରସ୍ତାରୁ କାମ ଆରମ୍ଭ କରିଚନ୍ତି ?

ସଦା—ଆଉ କ'ଣ କି ଆଜ୍ଞା ? ମୋ ମୋହରର ବଦ୍ୟାର ସିଦ୍ଧିରସ୍ତୁ ହେଇଚ ହେଇଠି । ସେ ଆଜକି ପଚିଶ ବର୍ଷ ତଳର କଥା । ତାଙ୍କଠୁ ବିଦାହେଇ ଆସିଲାବେଳେ ନିଜ ହାତରେ ଖଣ୍ଡେ ସାର୍ଟିଫିକେଟ୍ ସେ ମତେ

ଲେଖିଦେଇଥିଲେ—"ଏ ପିଲା ଅତି ଯୋଗ୍ୟ ।" ବାସ୍ । ମୁଁ ଆଉ ସିରସ୍ତା ଖୋଜି ବୁଲିବି କ'ଣ ? ସିରସ୍ତା ମତେ ଖୋଜି ବୁଲିଲା । ଓକିଲ ଶ୍ୟାମବାବୁ—ଶେଷକୁ ହାଇକୋର୍ଟର ଜଜ୍ ହୋଇ ଋଟାୟାର କଲେ— ତାଙ୍କ ସିରସ୍ତାରେ ନମ୍ବର ଓ୍ୱାନ ମୋହରର କିଏ ଥିଲା ? ଏଇ ସଦାନନ୍ଦ ।···କାହିଁକି, ଆମ ଆଗୃର୍ଯ୍ୟ ମହାଶୟ ! ମତେ କ'ଣ ଆଉ କୋଉଠି ରଖେଇଦେଲେ ? ବାର ଫନ୍ଦଫିକର କରି ତାଙ୍କ ସିରସ୍ତାକୁ ଟାଣିଆଣିଲେ । ସେଠି ବି ଏ କଲମ ହାତ୍ ଦେଖେଇଛି । ଶେଷକୁ, ଏ ବୟସରେ ଏ ଦୁ'ବର୍ଷ ହେଲା ସବୁ ଛାଡ଼ି ପୁଣି ଗୃଲିଗଲି । ହେଇଠି ଭେଟ ହେଇଗଲା ଆମ ଏ ଶଶୀବାବୁଙ୍କ ସାଙ୍ଗରେ । ଲୁହା ଚୁମ୍ବକ ଟପୋଟଣି ହେଇ ଯୋଡ଼ିହେଇଗଲା ପରି ମୁଁ ତାଙ୍କରି ପାଖରେ ଯୁଟିଯାଇଛି ।'

ପୀତାମ୍ବର—ଶଶୀଭୂଷଣରେ ବ୍ୟବହାର କେମିତି ଗୃଲିଛି ? ଦୁ'ପଇସା ହଉଛି ତ ?

ସଦା—ଆପଣ ଆଜ୍ଞା ଏ କଥା ପଗ୍ଋରିଲେ ? ଆଉ କେହି ନ ଜାଣିବା ଲୋକ ହେଲେ ପଗ୍ଋରିଥା'ନ୍ତା···କିନ୍ତୁ ଆପଣଙ୍କ ଭଳି ଲୋକ––

ପୀତାମ୍ବର—ନାଇଁ, ନୂଆ ଓକିଲାତି ଆରମ୍ଭ କରିଛି ତ, ସେଥିପାଇଁ ପଗ୍ଋରିଲି ।

ସଦା—(ଦୂରକୁ ଲକ୍ଷ୍ୟ କରି) ଏଇ ଦେଖୁଚନ୍ତି ଆଜ୍ଞା––ଏଇ ଝରକା ବାଟେ ଗୃହାଁନ୍ତୁ । ଆକାଶର ସେ କୋଣରେ—

ପୀତାମ୍ବର––କ'ଣ ଆଜ୍ଞା ?

ସଦା—ଗୋଟେ କଳାମେଘ ଖଣ୍ଡିଏ ଉଠିଛି ।

ପୀତାମ୍ବର—ହଁ ଦେଖୁଚି ।

ସଦା—ନ ଜାଣିଲା ଲୋକ ହସି ଉଡ଼େଇଦେବ—କହିବ—ଏଇ ଗୋଟାଏ ମେଘ—ଇଏ ପୁଣି ବର୍ଷିବ । ହେଲେ ଉତ୍ତରୀ ପବନ ଧୀରେ ଟିକିଏ ଯଦି ସେ ମେଘରେ ବାଜିଛି ନା···ସେତିକିବେଳେ ପୃଥିବୀ ଚଲିଯିବ ।···ନୂଆ ଓକିଲ ଏମିତି—ଏଇ ଖଣ୍ଡିକିଆ କଳାମେଘ ପରି । ଆଉ ଏ ହଦେଇ

ମୋହନ୍ତରେ ପର ମୋହନ୍ତରେ ଯୋଉଠି ଥିବ ଯେଠି କ'ଣ ଉତ୍ତର ପବନର ଅଭାବ ହବ ଯେ, ସେ ମେଘ ନବର୍ଷି ଗ୍ଲୁଡ଼ିବ··· ?

ପୀତାମ୍ବର—ମାଧ୍ୟାର ଭାଗ୍ୟ ।

ସଦା—ଆପଣ ଦେଖିବେ ନାହିଁ ଆଜ୍ଞା, ସବୁ ହୋଇଯିବ—ମୁଁ ବଞ୍ଚି ଥାଉଁ ଥାଉଁ—ଆପଣ ବଞ୍ଚି ଥାଉଁ ଥାଉଁ ଦେଖିବେ ସବୁ ହୋଇଯିବ ।

( ଭକା ଆସିଲା )

ଭକା—ଆଜ୍ଞା ?

ପୀତାମ୍ବର—କ'ଣ ?

ଭକା—ମା' ଡାକୁଛନ୍ତି ।

ପୀତାମ୍ବର—ମତେ ଆଉ ଡାକୁଚନ୍ତି କାହିଁକି ? ସବୁ କଥା ତ ମୁଁ ତାଙ୍କୁ କହିଦେଇଚି । (ଭିତରକୁ ଚାହିଁ) ଏଇତ ଆସିଲେଣି ।

ସଦା—ତା'ହେଲେ ଆଜ୍ଞା ଜବାବ ?

ପୀତାମ୍ବର—ଆମ ପକ୍ଷରୁ ତ କିଛି ଆପତ୍ତି ନାହିଁ । ଶଶୀଭୂଷଣର ବୋଉ ଆସିଚନ୍ତି—କନ୍ୟା ଦେଖିବାକୁ । ତାଙ୍କର ଯଦି ପସନ୍ଦ ହୁଏ ବାହାଘର ହବ । (ଭିତରୁ ସେମାନେ ଆସୁଥିବାର ଦେଖି ଅନ୍ୟଆଡ଼େ ଚାଲିଗଲେ । ମଣ୍ଟିବୋଉ ସହିତ ଶଶୀବୋଉ ଆସିଲେ । )

ସଦା—କ'ଣ ଦେଖାଚାହାଁ ସରିଲା ?

ଶଶୀବୋଉ—ହଁ, ସବୁ ଦେଖିଲି—ଖାଲି ବୋହୂକୁ ଦେଖିନି ।

ସଦା—ଅସଲ କଥାଟିକୁ ତ ଦେଖିନାହାନ୍ତି, ଅଉ ଦେଖିଚନ୍ତି କ'ଣ ?

ଶଶୀବୋଉ—ମାଧ୍ୟାକୁ ଟିକିଏ ଡାକନ୍ତୁ···

ମଣ୍ଟିବୋଉ—ଡାକୁଚି । ···ଆଲୋ ମାଧ୍ୟା ! ମାଧ୍ୟା !···

ଶଶୀବୋଉ—ଘରେ ନାହିଁକି ?

ମଣ୍ଟିବୋଉ—ଥିଲା ତ···(ମାଧ୍ୟା ବାହାରୁ ଆସିଲା । ବେଶଭୂଷା ସାଧାରଣ । )

ମଣ୍ଟିବୋଉ—ମାଧ୍ୟା—

ମାଧ୍ୟା—କ'ଣ ?

ମଣ୍ଟିବୋଉ—( ଇଙ୍ଗିତରେ ଜଣାଇଦେଲେ ଯେ ଏମାନେ ଆସିଚନ୍ତି । )

ମାୟା—ଓ ! (ପାଖକୁ ଆସି) ନମସ୍କାର । (ଦୁହିଁଙ୍କୁ ନମସ୍କାରକଲା ।)
ସଦା—ନମସ୍କାର, ନମସ୍କାର ।
ଶଶୀବୋଉ—(ମାୟାକୁ ପାଖକୁ ଟାଣିଆଣି) ତମର ନାଁ ମାୟା ?
ମାୟା—କାହିଁକି ମୋ ନାଁ ମାୟା ବୋଲି ବିଶ୍ୱାସ ହଉନି ?
ସଦା—ଏଁ ?
ମାୟା—(ପିନ୍ଧିଥିବା ମୁଦିକୁ ଦେଖାଇ)···ଏଇ ଦେଖନ୍ତୁ···ମୁଦିରେ ମୋ ନାଁ ଲେଖା ହେଇଚି—ମାୟା ।
ସଦା—ନା । ଆଉ ଅବିଶ୍ୱାସ କରିବାର କିଛି ନାହିଁ ।
ଶଶୀବୋଉ—(ମହାବୋଉଙ୍କୁ) ଝିଅକୁ କ'ଣ ସବୁ କାମ ଶିଖେଇଚନ୍ତି ?
ମାୟା—ମୁଁ କହୁଚି ଶୁଣନ୍ତୁ । ଏଇ ଦେଖନ୍ତୁ, ଏ ନଖ ।
ଶଶୀବୋଉ—(ହସି) ମା ଲୋ ! ଏତେ ବଡ଼ ବଡ଼ ନଖ ରଖିଚ କାହିଁକି ?
ସଦା—(ହସି) ସିଏ ଯେ କିଛି କାମ କରନ୍ତି ନାହିଁ, ତାର ପ୍ରମାଣ ଏଇ ନଖ । କାମ କରୁଥିଲେ ନଖ ଘୋରି ହୋଇଯାଇଥାନ୍ତା । ଏଇନା ମା ?
ମାୟା—ଠିକ୍ ସେଇଆ । ମୁଁ କିଛି କାମ କରେନା, ଖାଲି ବୁଲେ ।
ମହାବୋଉ—ମାୟା !!
ମାୟା—ଏମିତି ଆଖି ଦେଖେଇଲେ ମୁଁ ଆଉ ଏଠି ରହିବି ନାହିଁ—ଯାଉଚି ।
( ଉପରକୁ ଚାଲିଗଲା । )
ମହାବୋଉ—(ମୁହଁରେ ହତାଶାର ଛାୟା) ଗୋଟିଏ ଝିଅ ଘରେ ଏଇ ଗୋଟିଏ ବୋଲି ଭଉଣୀ···
ଶଶୀବୋଉ—ସଦେଇବାବୁ—
ସଦା—ଆପଣ କ'ଣ ଦେଖିଲେ କୁହନ୍ତୁ ।
ଶଶୀବୋଉ—ସବୁ ଭଲ—ସବୁ ଭଲ ଦେଖିଲି । ଖାଲି ଯାହା ଟିକିଏ···
ସଦା—କ'ଣ ?
ଶଶୀବୋଉ—କଥାବାର୍ତ୍ତାରେ ଟିକିଏ ମୁଖର ।
ସଦା—ମୁଖର ? ହଉ ମୁଖର । କ୍ଷତି କ'ଣ ? ଆପଣଙ୍କର ତ ସଦାବେଳେ ରୋଗ ବେମାରି ଲାଗିରହିଚି । ବୋହୂ ହବ ଘରକୁ ଏକୁଟିଆ । ଆଉ

ଏକୁଟିଆ ଲୋକ, ମୁଖସ୍ତ ନ ହୋଇ ମୂହଁଚୋର ହେଲେ ସମସ୍ତେ ମାଡ଼ପିଟି ଖାଇଯିବେ । ଆମର ମୁଖସ୍ତ ବୋହୂ ଦର୍କାର ।

ଶଶୀବୋଉ—ଯାହା କହୁଚ ସଦେଇବାବୁ, ମାଧ୍ୱୀ ମୁଖସ୍ତ ହଉ କି ଯାହାହଉ, ମତେ ସେ ଭଲଲାଗିଚ । ମୁଁ ତାକୁଇ ବୋହୂ କର୍ବି ।

ମଣ୍ଟୁବୋଉ—ତା'ହେଲେ···

ଶଶୀବୋଉ—ଜବାବ୍ ଦେଲ ସମୁଦୁଣୀ । ଏଇ ଆଜିର ବାର ଦିନ ଭିତରେ ବାହାଘର ହବ ।

ମଣ୍ଟୁବୋଉ—ମହାପ୍ରସାଦ ନିର୍ବନ୍ଧ ?

ଶଶୀବୋଉ—ଆଜି ସନ୍ଧ୍ୟାରେ ଗୋପାଳଜୀ ମନ୍ଦିରରେ ହବ ।

ସଦା—ହଁ ଆଜି ସନ୍ଧ୍ୟାରେ ମହାପ୍ରସାଦ ନିର୍ବନ୍ଧ କରି କାଲି ଭୋର୍ ଗାଡ଼ିରେ ଆମେ ଯିବୁ ।

ଶଶୀବୋଉ—ବାହାଘର ହେଲା ଦିନ ତ ହବ—ତେହେଲେ ମୋ ଜାଣିବାରେ ସମୁଦୁଣୀ, ମୋ ବୋହୂକୁ ମୁଁ ତମ ଜିମାରେ ଆଠଦିନ ପାଇଁ ଛାଡ଼ିଗଲି । ଆଠଦିନ ପରେ ପଠେଇଦବ । ମୁଁ ଯାଉଚି । (ସମସ୍ତେ ବାହାରିଗଲେ, ଅନ୍ୟ ଦିଗରୁ ଆସିଲେ ପୀତାମ୍ବର । ଟିକିଏ ପରେ ମଣ୍ଟୁବୋଉ ଫେରି-ଆସିଲେ ।)

ମଣ୍ଟୁବୋଉ—ମୁଁ ତ ମୋଟେ ବିଶ୍ୱାସ କରିପାରୁନି ଯେ ମୋ ପେଟରୁ ଏ ଝିଅ ଜନ୍ମିଚି ! କାହା ଘରେ ଭଲ ଇଏ ଯାଇ ଚଳିବ ?

ପୀତାମ୍ବର—ମୁଁ ସବୁ ଶୁଣିଚି ! ଭିଜା, ମାଧ୍ୱୀକୁ ଡାକିଆଣ ତ ?

( ଭିଜା ଉପରକୁ ଗଲା । )

ମଣ୍ଟୁବୋଉ—କାଲଠୁ ତାକୁ ଲଗେଇଚି ଟିକେ ଭଲ ଶାଢ଼ୀ ପିନ୍ଧିବାକୁ । ଦେଖିଲ ବେଳକୁ ସେଇ ଚିରାପିନ୍ଧା ଶାଢ଼ୀଖଣ୍ଡକ ପିନ୍ଧିଚି ।

ପୀତାମ୍ବର—ମୋ ମା' ଯୋଉ ଶାଢ଼ୀ ପିନ୍ଧିଲେ ବି ତାକୁ ସୁନ୍ଦର ଦିଶେ ।

ମଣ୍ଟୁବୋଉ—ଶାଢ଼ୀ କଥା ନ ହେଲା···ବରର ପିଏ ମା—ତାଙ୍କୁ ହସି ହସି ହାତ ଯୋଡ଼େଇ କହୁଚି—ନମସ୍କାର । ପୁଣି ଆଙ୍ଗୁଠିରେ ମୁଦିଟା ଦେଖେଇ···

ପୀତାମ୍ବର—ମୁଁ ସବୁ ଶୁଣିଛି ମହାବୋଉ ।
ମହାବୋଉ—ସିଏ ଯେ ରାଜି ହୋଇ ଜବାବ ଦେଇଯିବେ, ଏ ବିଶ୍ୱାସ ମୋର ମୋଟେ ନ ଥିଲା ।
ପୀତାମ୍ବର—ରାଜି ନ ହୁଅନ୍ତେ କାହିଁକି ? ସିଏ ଠିକ୍ ବୁଝିପାରିଲେ ଯେ, ଗର୍ଜିଲା ମେଘ ବରଷେ ନାହିଁ । (ଭିକା ଆସିଲା) ମାମ୍ୱାକୁ ଡାକିଲୁ ?
ଭିକା—ହଁ, ଆସୁଛନ୍ତି ।
ମହାବୋଉ—ବାହାଘର ଜବାବ୍ ହୋଇଯିବା କଥା ତାକୁ କହିଲୁ କି ?
ଭିକା—ହଁ ।
ପୀତାମ୍ବର—ଶୁଣି କ'ଣ କହିଲା ?
ଭିକା—କିଛି ନାହିଁ । ବହି ଖଣ୍ଡେ ମେଲେଇ ପଢ଼ିବସି କହିଲେ—ତୁ ଯା, ମୁଁ ଯାଉଛି ।
ପୀତାମ୍ବର—ହୁଁ ··( ଭିକା ଚାଲିଗଲା )
ମହାବୋଉ—ଆଜି ସକାଳେ ତମକୁ କ'ଣ କହୁଥିଲଟି ସେ ?
ପୀତାମ୍ବର—ସେଇ କଥା—ଆମେ ଯୋଉଠି ଠିକ୍ କରିବୁ, ତାର ଆପତ୍ତି ନାହିଁ ।
ମହାବୋଉ—ଏଇଠି ତା'ହେଲେ ମାମ୍ୱାର ବାହାଘର ହବ ! କେତେ କେତେ ବଡ଼ଘର ଗୁଡ଼ିଲା—ଶେଷକୁ ଏଇଠି ! ନିଜ ଘର ଖଣ୍ଡିକ ପୁଣି କୁଆଡ଼େ ବନ୍ଧା ପଡ଼ିଛି !
ପୀତାମ୍ବର—ସେ କଥା ଭାବିବାର ବେଳ ଆଉ ନାହିଁ ମହାବୋଉ ।
ମହାବୋଉ—ଯେମିତି ଢଙ୍ଗ ତା'ର—ଯେମିତି ଫୁଲଫାଙ୍କିଆ ହୋଇ ସେ ବଢ଼ିଛି—ଶାଶୁଘର ଯାଇ କେମିତି ଯେ ସେ ଚଳିବ ?
ପୀତାମ୍ବର—(ହତାଶ ହେଲା ଭଳି) ଚଳି ପାରିବ ନାହିଁ ! ଶାଶୁ ଆଉ ସ୍ୱାମୀଙ୍କ ମନଲକ୍ଷ୍ମୀ ବୋହୂ ସେ ହୋଇପାରିବ ନାହିଁ !
ମହାବୋଉ—ଆଖି ଆଗରେ ତ ଦେଖିଲ କାବେରୀ ପରି ବୋହୂ ···
ପୀତାମ୍ବର—ନା ମହାବୋଉ, ମାମ୍ୱା ମୋର ଏମିତି ହବନାହିଁ । ମୋର ମନ କହୁଛି—ଆଉ କାହାପରି ସେ ନିଜ ସ୍ୱାର୍ଥକୁ କେବେ ଜଗିବ ନାହିଁ ।

ଭଗବାନ ତା' ଜଭ ଅଗରେ ଗୋଟାଏ ଦାଢ଼ୁଆ ଛୁରୀ ଦେଇଛନ୍ତି ସତ; କିନ୍ତୁ ତା' ପେଟ ଭିତରେ ଦେଇଚନ୍ତି ପ୍ରଖର ବୁଦ୍ଧି । ତମେ ଦେଖିବ ମହାବୋଉ, ତା' ବୁଦ୍ଧି ପାଖରେ ତା' ଛୁରୀ ହାରମାନିଯିବ ।

ମହାବୋଉ—ସେଇ ଠାକୁରେ ଜାଣନ୍ତି—ସେଇ ତାଙ୍କୁ ଭରସା । ମହୀ କଥା ଦେଖିଲ ଟି ! ବାହାଘର ପ୍ରସ୍ତାବ ନଜେ ଆଣିଲା—ହେଲେ ନଜେ ଟିକେ ଆସିଲା ନାହିଁ ।

ପୀତାମ୍ବର—କିଛି ଅସୁବିଧା ଥିବ—ସେଇଥିପାଇଁ ହୁଏତ ଆସି ନାହିଁ ।

ମହାବୋଉ—ବୋହୂଟାକୁ ବି ଟିକେ ପଠେଇ ଦେଲା ନାହିଁ । ଛାଡ଼, ସେ ମୋ କପାଳ । (ଉପରୁ ମାୟା ଆସିଲା ।)

ପୀତାମ୍ବର—ଅଠର ବର୍ଷ ଭିତରେ ଏଇ ପ୍ରଥମ ଦେଖିଲି ମା ତୁ ମନ ମାରି ମୋ ପାଖରେ ଠିଆହେଉଚୁ !

ମାୟା—ମତେ ତମମାନଙ୍କ ପାଖରୁ ତଡ଼ି ଦଉଚ କାହିଁକି ବାପା ?

ପୀତାମ୍ବର—ତଡ଼ି ଦଉଚି—ପାଗଳୀ !

ମାୟା—ଭାଇ ଭାଉଜ ମୋ ପାଇଁ ଘର ଛାଡ଼ି ବାହାରେ ରହିଲେ । ସେଇଥି-ପାଇଁ ତମେ ମତେ···

ପୀତାମ୍ବର—କିଏ କହିଲା ମା···ଏ କଥା ତତେ କିଏ କହିଲା ?

ମାୟା—ସେମାନେ ବାହାରେ ରହିଲେ । ମୁଁ ଚାଲିଗଲେ ତମମାନଙ୍କ କଥା ବୁଝିବ କିଏ ?

ପୀତାମ୍ବର—ଦୁନିଆରେ ବାପ-ମା ଏମିତି ସ୍ୱାର୍ଥପର ହେଇ ରହିପାରିବେ ନାହିଁ ମା । ସବୁଦିନେ ସବୁକାଳେ ବାପ-ମା ଆଗ ପୁଅଝିଅଙ୍କ ସ୍ୱାର୍ଥ ଦେଖନ୍ତି । ତାଙ୍କ ସୁଖରେ ଆମ ସୁଖ ।

ମାୟା—ଏଇଠି ତମ ପାଖରେ କ'ଣ ମୁଁ ସୁଖରେ ରହିପାରି ନ ଥାନ୍ତି ?

ମହାବୋଉ—ନାଇଁ ମା ! ଝିଅ ବାହାସାହା ହେଇ ଘରସଂସାର କଲେ ବାପ-ମାଙ୍କୁ ସୁନ୍ଦର । ସେଇଥିରେ ବାପ-ମାଙ୍କର ସୁଖ । (ମାୟା ତଳକୁ ମୁହଁକରି ଠିଆହୋଇଥାଏ । )

ପୀତାମ୍ବର—କହ ମା···ଆଉ କ'ଣ କହିବୁ ?

ମାଯ୍ନା—ନା…

ମହାବୋଉ—ଅନଭି ଅନଭି ଦିନ ଆଠଟା ଗ୍ଭଲିଯିବ । ତେଣିକି ତୋ' ଘର ତୁ କରିବୁ । ଯେମିତି ଢଙ୍ଗରେ ତୁ ଏଠି ବଢ଼ିଚୁ, ସେଇଥିପାଇଁ କହୁଚି—ଏଠି ତୋ' ଜନ୍ମକଲା ବାପ-ମା ଆମେ ଅଛୁ—ତୁ ମୋ ମୁଣ୍ଡ ଛୁଇଁ କହ ମା…ବାପ-ମାଙ୍କ ମାନ ମହତ ଜଗି ବୋହୂପଣିଆ କରିବୁଟି ?

ମାଯ୍ନା—( ଆଖିରେ ଲୁହ, କିନ୍ତୁ ମନରେ ରାଗ ) କ'ଣ କରିବାକୁ କହୁଚ ମତେ ?

ପୀତାମ୍ବର—ଶୁଣ୍ ମା, ମୁଁ ତତେ କିଛି କରିବାକୁ କହୁନି । ଖାଲି ଗୋଟିଏ କଥା ତୁ ମନେରଖିବୁ…ତୁ ମୋର ଝିଅ—ତୁ ଭଲରେ ଅଛୁ ଜାଣିଲେ ମୁଁ ଶାନ୍ତି ପାଇବି । (ମାଯ୍ନା ଦାନ୍ତ ଚିପି କାନ୍ଦିବାକୁ ଲାଗିଲା ।)

ମହାବୋଉ—କହ ମା—କଥା ଦେ !

ମାଯ୍ନା—ମୁଁ ତମମାନଙ୍କ ପାଖରୁ ଗ୍ଭଲିଗଲେ ଯଦି ତମେ ସୁଖରେ ରହିବ, ତେବେ ମୁଁ କଥା ଦେଲି ବୋଉ—ତୋ' କଥା ରଖିବି । (ଉଚ୍ଛ୍ୱସିତ କ୍ରନ୍ଦନର ବେଗ ସମ୍ଭାଳି ନପାରି ବୋଉର କାନ୍ଧକୁ ଆଉଜିପଡ଼ିଲା ।)



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ଯୁବକ ଓକିଲ ଶଶୀଭୂଷଣଙ୍କ ଦପ୍ତର । ଅତି ସାଧାରଣଭାବେ ସଜ୍ଜିତ । ଶଶୀଭୂଷଣ ବସି ବସି ଖଣ୍ଡେ ବହି ଓଲଟାଉଥିଲେ । ଆସିଲେ ମୋହରିର ସଦାନନ୍ଦ । )

ସଦା—ଜୁହାର ଆଜ୍ଞା !

ଶଶୀ—ଆରେ, ସଦାନନ୍ଦବାବୁ, ବସନ୍ତୁ ।

ସଦା—ଆଜି ଟିକିଏ ଡେରି ହୋଇଗଲା ଆଜ୍ଞା ।

ଶଶୀ—କାହିଁ ନାହିଁ ତ—ଏଇ ତ ମୋଟେ ସାତଟା ବାଜିଛି ।

ସଦା—ସାତଟା କ'ଣ କମ୍ ହେଲଣି ଶଶୀବାବୁ ? ମଧୁ ବାରିଷ୍ଟରଙ୍କ ସିରସ୍ତାରେ ଭୋର ପାଞ୍ଚ ନ ବାଜୁଣୁ ସମସ୍ତେ ହାଜର । ସେ ବେଳ ଆଉ କାହିଁ ? ଆଜିକାଲି ତ ସବୁ ଢିଲା—ସବୁ ଫାଙ୍କି ।

ଶଶୀ—ରାଜୁବାବୁଙ୍କର ସେ ଯୋଉ ହାଇକୋର୍ଟ ରାୟ ନକଲଟା ଆଣିଥିଲ··· କାହିଁ ?

ସଦା—ମୋ ପାଖରେ ଅଛି ଆଜ୍ଞା । ପଢ଼ିବେ ?

ଶଶୀ—ହଁ । ଦିଅନ୍ତୁ ତ । ସବୁଟା ପଢ଼ି ତା'ଉପରେ ଗୋଟାଏ ନୋଟ୍ ଲେଖି ତାଙ୍କୁ ଆଜି ଦବାକୁ ହବ ।

ସଦା—(ଦେଇ) ପଢ଼ନ୍ତୁ ଆଜ୍ଞା, ପଢ଼ନ୍ତୁ । ଯେତେ ପାରନ୍ତି ପଢ଼ନ୍ତୁ । ଏଇଦିନୁ ଆଇନ୍ କାନୁନ ନ ପଢ଼ିଲେ ଆଉ କି ଓକିଲ ହେବେ ? ଏଇ ଆଖି ଦେଖି

ଦେଖିବ ଆଜ୍ଞା, ମଧବାବୁଙ୍କ ପଢ଼ା । ଠିକ ଗୃହପାଖଯାକ ଟେବୁଲ, ଟେବୁଲ ଉପରଯାକ ବହି । ଆଉ ଆଜକାଲ ତ ସବୁ ଫାର୍କିରେ ଚାଲୁଛି । ( ଶଶୀଭୂଷଣ ପଢୁଥା'ନ୍ତି )

ସଦା—ଆଜ୍ଞା !

ଶଶୀ—କ'ଣ କହୁଚନ୍ତି ?

ସଦା—ଆଜ୍ଞା, ଏଇ ଜମିଦାରୀ ଉଠିଯାଇ ନ ଥିଲେ ସଂସାର କ'ଣ ଅଚଳ ହୋଇଯାଇଥାନ୍ତା ?

ଶଶୀ—ସଂସାର ଅଚଳ ହୋଇଥାନ୍ତା କି କ'ଣ ମୁଁ ଜାଣେନା; କିନ୍ତୁ ଆମର ସରକାର ଆଉ ସମାଜ ବୋଧହୁଏ ଆସ୍ତେ ଆସ୍ତେ ଅଚଳ ହୋଇ-ପଡ଼ିଥାନ୍ତା ।

ସଦା—ଆଜ୍ଞା, ଆପଣ ଆଜକାଲକାର ପିଲା···ଆପଣ ଏ କଥା କହୁଚନ୍ତି ସିନା —ହେଲେ ଜମିଦାରୀ ଉଠିଯାଇ ଏଣେ ଯେ ଆମ ହାତ ଆସି ଅଚଳ ହବାକୁ ବସିଲାଣି—ଏ କଥା ତ କେହି ବୁଝିଲେ ନାହିଁ !

ଶଶୀ—ସଦାନନ୍ଦବାବୁ, ମତେ ମହକିଲ ଜୁଟେଇବାକୁ ଆପଣ ଖୁବ ବ୍ୟସ୍ତ ହୋଇଉଠିଚନ୍ତି ନା ?

ସଦା—ନାଇଁ ଆଜ୍ଞା, ମୁଁ ମୋଟେ ବ୍ୟସ୍ତ ହଉନି । ବ୍ୟସ୍ତ କାହିଁକି ହେବ ଯେ ? ହେଇଟି ଆଜ୍ଞା, ମଧୁ ବାରିଷ୍ଟରଙ୍କୁ ବ ସଦନେ ଏମିତ ମହକିଲଙ୍କ ବାଟ ଚାହିଁ ବସିବାକୁ ହଉଥିଲା । ଆଉ ଆମେ ଆପଣେ କୋଉ ଛାର ଯେ ? (ବାହାରକୁ ଚାହିଁ) କିଏ ? କାହାକୁ ଖୋଜୁଚନ୍ତି ଆଜ୍ଞା ? ଏଇଟା ଶଶୀବାବୁ ଓକିଲଙ୍କ ଘର । ଆପଣ କାହାକୁ ଖୋଜୁଚନ୍ତି ? (କହି କହି ବାହାରକୁ ଉଠିଗଲେ ଓ ଟିକିଏ ପରେ ଫେରିଆସିଲେ )

ଶଶୀ—କ'ଣ ହେଲା ସଦାନନ୍ଦବାବୁ ? ଏମିତ ଉଠି ଚାଲିଗଲେ କାହିଁକି ?

ସଦା—ନାଇଁ ଆଜ୍ଞା···

ଶଶୀ—କିଏ ସେ ଆସିଥିଲେ···? କହୁ ନାହାନ୍ତି କିଏ ସେ ଆସିଥିଲେ ?

ସଦା—ନାଇଁ ଆଜ୍ଞା, ତାଙ୍କର ଗୋଟିଏ କୁକୁର ହଜିଯାଇଚି ଯେ, ସିଏ କୁକୁର ଖୋଜି ବୁଲୁଚନ୍ତି ।

ଶଶୀ—(ହସି ହସି) ଆଉ ଆପଣ କ'ଣ ଭାବଲେ ଯେ ସେ ଓକିଲ ଝୋକ ଭୁଲୁଚନ୍ତି ?

ସଦା—ନାହିଁ ଆଜ୍ଞା, ମୁଁ ତା କାହିଁକି ଭାବିବ ? ମୁଁ ତା' ଭାବନ ଯେ ଆପଣ ଦେଖିବେ ନାହିଁ ଆଜ୍ଞା, ସବୁ ଠିକ୍ ହୋଇଯିବ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ।

ଶଶୀ—ମୁଁ ମୋଟେ ବ୍ୟସ୍ତ ହଉନାହିଁ—ବରଂ ଆପଣ ମୋ ପାଇଁ ବ୍ୟସ୍ତ ହେଇଉଠୁଚନ୍ତି ।

ସଦା—ପୁଣି ଆପଣଙ୍କ ଶଶୁରଘର ବଡ଼ଲୋକ, ଆପଣ କଣ ଭାବୁଚନ୍ତି ତାଙ୍କ ଆଡ଼ୁ ଆପଣଙ୍କ ବ୍ୟବସାୟରେ କିଛି ସାହାଯ୍ୟ ମିଳିବ ନାହିଁ ? ନିଶ୍ଚୟ ମିଳିବ ।

ଶଶୀ—ସତ କହୁଚ ସଦାନନ୍ଦବାବୁ, ମୋ ବ୍ୟବସାୟ ସମ୍ବନ୍ଧରେ ଚେଷ୍ଟା କରିବାର ବେଳ ମୁଁ ଏପର୍ଯ୍ୟନ୍ତ ପାଇନି···ମୁଁ ଖାଲି ଭାବୁଚି—

ସଦା—କ'ଣ ଆଜ୍ଞା ?

ଶଶୀ—ଏ ଅବସ୍ଥାରେ ମୋର ବିବାହ କରିବା ବୋଧହୁଏ ଠିକ୍ ହେଇନି ।

ସଦା—କାହିଁକି ଆଜ୍ଞା ? ଏମିତି ଗୋଟାଏ ବାହାଘର କେତେ ଲୋକଙ୍କ ଭାଗ୍ୟରେ ଜୁଟେ ? ଜାନଯୌତୁକ, ଆଉ ଅଳଙ୍କାର ଛଡ଼ା ନଗଦ ତିନି ହଜାର ଟଙ୍କା ପାଇଲେ ।

ଶଶୀ—ହୁଁ, ତିନି ହଜାର ଟଙ୍କା ପାଇଲି ବୋଲି ତ ନିଜ ବାପଘର ଖଣ୍ଡିକ ବାପା ବନ୍ଧା ପକେଇ ଯାଇଥିଲେ ତାକୁ ମୁକୁଳେଇ ପାରିଲି । ନଚେତ୍ ଏତେବେଳକୁ ଘର ଖଣ୍ଡିକ ବନ୍ଧା ଉପରକୁ ଉଠନ୍ତାଣି ।

ସଦା—ତା'ହେଲେ ? ଏ ଯାହା କହନ୍ତି ସ୍ତ୍ରୀ ଭାଗ୍ୟରୁ ଭୋଗ, ସ୍ତ୍ରୀ ଧନରେ ଧନୀ, ସେ କ'ଣ କମ୍ କଥା ? ପୁଣି ଘରକୁ ସିଏ ବୋହୂ ହୋଇ ଆସିଲେ ସିଏ ତ ସାକ୍ଷାତ୍ ଲକ୍ଷ୍ମୀ । ଶାଶୁଙ୍କ ପାଦସେବାଠାରୁ ଘରର ଯାବତୀୟ କାମ ନିଜ ହାତରେ ଉଠଉଚନ୍ତି ।

ଶଶୀ—ମୁଁ ସେଇ ମାୟା କଥା ଭାବୁଚି ! ଯେମିତି ଭାବରେ ତାଙ୍କ ଘରେ ସେ ବଢ଼ିଥିଲି···ଆଉ ଏଠି ଯେମିତି ସେ ଚଳୁଚି—ଏଇ ମାସ ଦି'ଟା ଭିତରେ—

ସଦା—ଏଇ, ମାୟା ମା' ମୋର ଚା' ନେଇ ଆସିଲଣି । (ଦି' ହାତରେ ଦି' କପ୍ ଚା' ନେଇ ମାୟା ଆସିଲ । ଶଶୀବାବୁଙ୍କ ଉଦ୍ଦେଶ୍ୟରେ ଗୋଟାଏ କପ୍ ଟେବୁଲ ଉପରେ ରଖିଦେଇ ଆଉ କପ୍‌ଟା ସଦାନନ୍ଦ ହାତକୁ ଦେଲ ।)

ସଦା—ମୁଁ ତ ଘରେ ଚା' ଖାଇ ଆସିଥିଲି—ମୋ ପାଇଁ କାହିଁକି ଆଉ ଏ କଷ୍ଟ ମା—?

ମାୟା—କପେ ଚା'ତ !

ସଦା—ଉପର ମୁହଁରେ ଏମିତ କହୁଥିଲି ସିନା—ହେଲେ ମା, ସତ କହୁଚ, ଦିନଭରି ଶହେ କପ ଚା' ଖାଇଲେ ବ ଏଠି ତମ ହାତରୁ କପେ ଚା' ନ ଖାଇଲେ ମନ ଶାନ୍ତ ହୁଏନା···(ମାୟା ଫେରଯାଉଥିଲା) ଏଇ···ବାବୁଙ୍କ ଓକିଲାତ ବ୍ୟବସାୟ କଥା ଆମର ପଡ଼ିଥିଲା···(ମାୟା ଅଟକିଲା) ତମେ ଦେଖିବ ମା—ସବୁ ଠିକ୍ ହେଇଯିବ । ଏଇ ଆରମ୍ଭରୁ ବାବୁଙ୍କର ଏ ବିଦ୍ୟାରେ ଯେଉଁ ବୁଦ୍ଧି ମୁଁ ଦେଖିଲଣି—ଖାଲି ଚକାଡୋଳାଙ୍କ ଦୟା ଥିଲେ···ତମେ ଦେଖିବ ମା—ମିଷ୍ଟର ଦାସଙ୍କ ସିରସ୍ତାରେ ଏ ହାତ ପୋଖତ ହେଇଚ କି ?

ମାୟା—ସତରେ ଆପଣ ମିଷ୍ଟର ଦାସଙ୍କ ସିରସ୍ତାରେ କାମ କରୁଥିଲେ ?

ସଦା—(ହତ୍‌ବତ୍ ହେଇ ଯାଇ) ଏଁ···ହଁ ମା···

ମାୟା—ଆପଣଙ୍କ ବୟସ କେତେ ହେଲ କି ?

ସଦା—ବୟସ ! ଅନେକ । ମୋ ଦଶ ବର୍ଷ ବେଳୁ ମୁଁ ତାଙ୍କ ସିରସ୍ତାରେ ଆସି ଢୁକିଲି । (ମାୟା ଆସିଲ । ହାତରେ ଚା' କପ୍)

ମାୟା—ଦଶ ବର୍ଷ ବୟସରେ ଆପଣ ମିଷ୍ଟର ଦାସଙ୍କ ଭଳି ଓକିଲଙ୍କ ସିରସ୍ତାରେ କାମ କରୁଥିଲେ ?

ସଦା—କରୁଥିଲି—ମୋ ବୁଦ୍ଧିବିଦ୍ୟାକୁ ପାଇଲଭଳି କାମ କରୁଥିଲି । ଫଟୋ ଅଛି ମା···ମିଷ୍ଟର ଦାସ ଚୌକିରେ ବସିଛନ୍ତି—ମୁଁ ତାଙ୍କ ପଛରେ ଠିଆ ହେଇଛି···ଏବେ ଯାଏ ସେ ଫଟୋ ମୋ ଘରେ ଅଛି ।···ଆରେ—ବଡ଼

ମା' ପୁସ୍ତାଏ କର୍ମୀଙ୍କ ପାଇଁ କହିଥିଲେ···ଦବାକୁ ଭୁଲି ଯାଇଛି···ଯାଏଁ ଦେଇଆସେ । (ଭିତରକୁ ଗଲେ)

ମାୟା—ବେଶ୍ ଲୋକ !

ଶଶୀ—ଯାହା ବି ହୁଅନ୍ତୁ—ତାଙ୍କର ଉପରେ ନିର୍ଭର କରିବାକୁ ପଡ଼ୁଛି ।

ମାୟା—ଆଜି ତମପାଇଁ ଚା' ଆଣିବାକୁ ଟିକିଏ ଡେରି ହେଲା ।

ଶଶୀ—କାଇଁ ନାଁ ତ !

ମାୟା—ଡେରି ହେଲା ବୋଲି ମତେ ତମେ କ୍ଷମା କରିବା ପ୍ରଶ୍ନ ଉଠୁନି ଯେ—ଡେରିହେଇଛି । ଆଜି ଗୁରୁବାର, ବୋଉ ଅରୁଆ ଖାଇବେ—ତାଙ୍କପାଇଁ ଅଲଗା ଚୁଲି—ଅଲଗା ବାସନ—ସେ ସବୁ ପ୍ରଥମେ ଠିକ୍‌ଠାକ୍ କରିବାକୁ ପଡ଼ିଲା । ମୁଁ ଯାଏଁ ଲୋ ମା···(ଯାଉଥିଲା)

ଶଶୀ—ଶୁଣ ମାୟା !

ମାୟା—କ'ଣ ?

ଶଶୀ—ଏତେଗୁଡ଼ାଏ କାମ ତମକୁ ଏକା କରିବାକୁ ପଡ଼ୁଛି—ଅଥଚ···

ମାୟା—କ'ଣ କହିଲ ଅଭ୍ୟାସରେ କୁହ ତ···

ଶଶୀ—ନାଇଁ ମାୟା···

ମାୟା—କ'ଣ ନାଇଁ ମାୟା ! ଏଇନେ ହୁଏତ କହିବ ଚାକିରିଟାଏ ଖୋଜିଛି ଯେ···ପାଉନି । ଓକିଲ ସାହେବ···କଚେରୀରେ ଜବାବ୍ ସୁଆଲ୍ କରିଭଳି ଠେକ୍‌ଠୋକ୍ କଥା କହି ଶିଖ—ନ ହେଲେ ହାରିଯିବ ଯେ !

ଶଶୀ—ବାସ୍ତବିକ ମାୟା, କାହିଁକି କେଜାଣି ତମ ପାଖରେ ମୁଁ ଯେମିତି ଦୋଷୀ ହେଇ ରହିଯାଉଛି ।

ମାୟା—ଦୋଷ କିନ୍ତୁ ତମେ ମୋ ପାଖରେ କରିଛ । (ଶଶୀ ଯେମିତି କିଛି ବୁଝିପାରିଲା ନାହିଁ ।) ଆମ ଘରୁ ଯୋଉ ଚାରି ହଜାର ଟଙ୍କା ଯୌତୁକ ପାଇଥିଲ, ମୁଁ ମାନୁଛି ସେ ଟଙ୍କା ତୁମର । କିନ୍ତୁ ସେଇ ଟଙ୍କାରେ ତମେ ତମ ଘର ମୁକୁଳେଇଲ—ଏ କଥା ମୋ ପାଖରେ ତୁମେ ଲୁଚେଇଛ କାହିଁକି ?

ଶଶୀ—ନାଇଁ ମାୟା, ଏଇ ଆଠ ଦିନ ହେଲା ତ ମୋଟେ ସେ କଥା ତୁଟିଲା ।

ମାୟା—ଶୁଣ, ମୋର ଏତିକି ଅନୁରୋଧ ତମେ ରଖ—ଏମିତ ଛୋଟ ଛୋଟ କଥାରେ ଆମ ଭିତରେ ଯେପର କିଛି ଅଜଣା ଅଶୁଣା ନ ରହେ ।
(ସଦାନନ୍ଦ ଆସିଲେ ।)

ସଦା—ବାବୁ—ମୁଁ ଠିକେ ଏଇ ମଧୁ ପଣ୍ଡାଙ୍କ ଘରୁ ଆସୁଚି । ବଡ଼ମା ପଠେଇଲେ । (ଚାଲିଗଲେ)

ମାୟା—ମୁଁ ଯାଏ । ରବି କହୁଥିଲା, ତାକୁ ଟିକିଏ ଗ୍ରାମାର ବୁଝେଇ ଦେବ ।

ଶଶୀ—ରୋଷେଇବାଠୁଁ ଆରମ୍ଭ କରି ଘରେ ସବୁ କାମଦାମ କରୁଚ— ତା'ପରେ ପୁଣି ରବିର ପଢ଼ା···

ମାୟା—କାହିଁକି—ରବିପାଇଁ ଜଣେ ଟିଉସନ ମାଷ୍ଟର ରଖିବ ନା କଣ ?

ଶଶୀ—ପୁଣି ଏ କଥା ତମେ କହିଲ ମାୟା ?

ମାୟା—ମୁଁ କହିଲି ନା ତମେ କହିଲ ? ରବି ତମର ଭାଇ, ତା' ପାଇଁ ଟିଉଟର୍ ରଖିପାରୁନ କି ନିଜେ ପଢ଼େଇ ପାରୁନ—ଏ ଅବସ୍ଥାରେ ମୁଁ ତା' ପଢ଼ା ଦେଖିବି ନାହିଁ ତ ଦେଖିବ କିଏ ?···ଅବଶ୍ୟ ଓକିଲ୍ ସାହେବ,···ତମ ଘରେ ମୁଁ ଖୁବ୍ ଭଲ ପଢ଼ାପଢ଼ି କରୁ ନ ଥିଲି । ତଥାପି ମୋର ଯାହା ବିଦ୍ୟାବୁଦ୍ଧି—( ଭିତରୁ ଡାକ ଡାକ ଆସିଲେ ଶଶୀବୋଉ )

ଶଶୀବୋଉ—ବୋହୂ—ବୋହୂ !—ଏ କ'ଣ ବୋହୂ—ତୁ ଆସି ଏଠି ? କଚେରୀ ଘରେ ତୋ'ର କି କାମ ? (ମାୟା ଚାଲିଯାଉଥିଲା) ଚାଲିଯାଉଚୁ କୁଆଡ଼େ ? ଶୁଣ୍···ଏଇଠି ପୁଅ ଆଗରେ କଥାଟା ପଡ଼ୁ ।

ଶଶୀ—କ'ଣ ହେଇଚି ବୋଉ ?

ଶଶୀବୋଉ—ଏମିତିକା ରଜାଘର ଖର୍ଚ୍ଚକୁ ତ ମୁଁ ଅଉ ପାରିବି ନାହିଁ । ମୁଁ ରୋଗିଣା ଲୋକ, ମୋର ଏତେ ଆଡ଼କୁ କିଏ ହବ ?

ଶଶୀ—କ'ଣ ହେଇଚି—କ'ଣ ?

ଶଶୀବୋଉ—ଚୂଲାରେ ଚୂଲାଏ କାଠ ମୁହେଇଁ ଦେଇ—ତୋ'ର ଆସି ଏଠି କଚେରୀ କାମ ଚାଲିଚି, ତେଣେ ଘଡ଼ିକରେ ବଡ଼ାଏ କାଠ ଜଳିଗଲାଣି । ଏ ମୁହଁବଢ଼ା କଥା ମୋ ଧାତୁରେ ଯିବ ନାହିଁ । (ଚାଲିଗଲେ । ମାୟା ମୁହଁ ପୋଛି ଠିଆହୋଇଥାଏ)

ଶଶୀ—ମାୟା···(ମାୟା ମୁହଁ ଟେକ ଚାହିଁଲା । ମୁହଁରେ ହସ । ସେ ଯିବାକୁ ବାହାରିଲ) ଶୁଣ ମାୟା !

ମାୟା—ପୁଣି ଅଟକଉଚ କ'ଣ ପୁଣି ଗାଳି ଶୁଣେଇବ ବୋଲି ?

ଶଶୀ—ନା—ଏ ଅନ୍ୟାୟ । ବୋଉ କ'ଣ ଭାବଚ ଯେ ସେ ମଫସଲର ଗୋଟାଏ ମୂର୍ଖ ଝିଅକୁ ବୋହୂ କରି ଆଣିଚି—ତାକୁ ଯାହାପାରେ ତାହା କହିଗଲେ ସେ ସହିଯିବ ?

ମାୟା—ଶୁଣ, ଶିକ୍ଷିତା ପାଠୋଇ ବୋହୂ କେମିତି ଭଲରେ ଘର କରନ୍ତି, ସେତକ ଶିକ୍ଷା ପାଇବାର ସୌଭାଗ୍ୟ ଅବଶ୍ୟ ମୋର ହେଇନି । କିନ୍ତୁ ଶିକ୍ଷିତା ବୋହୂଙ୍କ ପାଇଁ କେମିତି ଘର ଭାଙ୍ଗେ ସେ ଦୁଃଖ ମୁଁ ମୋ ନିଜ ଅଙ୍ଗରେ ନିଭେଇଚି । ଅତଏବ ମୋ ପାଇଁ ଯେ ତମ ଘର ଭାଙ୍ଗିବ ନାହିଁ ଏତକ ତମେ ନିଶ୍ଚିତ ଜାଣିଥାଅ । ( ଏତିକବେଳେ ୧୩।୧୪ ବର୍ଷର ପୁଅ ରବି ଆସିଲା ।)

ରବି—ନୂଆବୋଉ···ମତେ ଗ୍ରାମାର୍ ପଢ଼େଇଦବ ପରା ?

ମାୟା—ତମେ ବହି ନେଇ ଡ୍ରେସେଇଘର ଦୁଆରମୁହଁକୁ ଆସ—ସେଇଠି ପଢ଼େଇଦେବ ।

ରବି—ନାହିଁ—ନାହିଁ—ରୋଷେଇଘରେ କ'ଣ ଗୋଟାଏ ଯାଇ ପଢ଼ିବ ?

ମାୟା—ସୁନାଟା ପରା, କିଛି ଅସୁବିଧା ହବନାହିଁ । ଯାଅ, ବହି ନେଇ ଆସ ।

ରବି—ହଉ ( ଚାଲିଯାଉଥିଲା, ଫେରିପଡ଼ି ) ନୂଆବୋଉ, ଗୋଟାଏ ଜିନିଷ ମାଗିବି ଦବ ?

ମାୟା—କ'ଣ କୁହ ?

ରବି—ତେଣେ ଚାଲ—କହିବ ।

ମାୟା—କାହିଁକି ଭାଇଙ୍କ ଆଗରେ କହିବାକୁ ଲାଜ ଲାଗୁଚି ନା କଣ ?

ଶଶୀ—ତା' ପରୀକ୍ଷା ମୁଣ୍ଡ ଉପରେ, ମତେ କହିଥିଲା ଗୋଟାଏ ଫାଉଣ୍ଟେନ୍ ପେନ୍ ପାଇଁ ।

ମାୟା—ଆଣି ଦଉ ନାହଁ ?

ଶଶୀ—କ'ଣ ଦରକାର—ପରୀକ୍ଷାବେଳେ ମୋ ଫାଉଣ୍ଟେନ୍‌ଟା ନେଇଯିବ ।

ରବି—ଦେଖିଲ ତ ନୂଆ ବୋଉ !
ମାଧ୍ବ—ଅଚ୍ଛା, ଆଚ୍ଛା, ମନ ଦୁଃଖ କର ନାହିଁ । ମୋଠୁ ଟଙ୍କା ନେଇ କଣି ଆଣିବ । ହେଲେ ପରୀକ୍ଷାରେ ପୋଜିସନ୍ ରଖି ପାଶ୍ କରିବା ଦରକାର ।
ରବି—ତମେ ଫାଉଣ୍ଟେନ୍ କଣିଦେଲେ ନିଶ୍ଚୟ ପାଶ୍ ହେବ ।
ମାଧ୍ବ—ହଉ, ଚାଲ—ତମାର୍ ପଢ଼ିବ ଚାଲ । ( ଦୁହେଁ ଚାଲିଗଲେ । ଶଶୀଭୂଷଣ ମୁର୍ଦ୍ଧନୟନରେ ଚାହିଁ ରହିଥାନ୍ତି । )

## ଦ୍ୱିତୀୟ ଦୃଶ୍ୟ

(ପୀତାମ୍ବରଙ୍କ ଅଳିନ୍ଦ । ପୀତାମ୍ବର ଗୋଟିଏ ମୋଡ଼ା ଉପରେ ବସିଚନ୍ତି । ହାତରେ ଖଣ୍ଡେ ଖବରକାଗଜ ଧରିଥିଲେ ମଧ୍ୟ କାଗଜ ପଢ଼ାରେ ତାଙ୍କର ମନ ନାହିଁ । ମୁହଁରେ ହତାଶାର ଛାଇ । ମହାବୋଉ ଆସିଲେ—)

ମହାବୋଉ—ଏଠି ବସି କ'ଣ କରୁଚ ?
ପୀତାମ୍ବର—ନା—ଏଇ କାଗଜଟା ଦେଖୁଥିଲି ।
ମହାବୋଉ—ଘରେ ଶୋଇଥିଲ, ଉଠି ଆସିଲ କାହିଁକି ? ତମ ଦେହ ଭଲ ଲାଗୁଚି ଟି ?
ପୀତାମ୍ବର—ହଁ ।
ମହାବୋଉ—ହେଲେ ବି ଆଉ ମାସେ ଛୁଟି ନିଅ । ଦେହ ପୂରା ଭଲ ନ ହେବାଯାଏ କାମକୁ ଯାଅ ନାହିଁ । ନାହିଁ ତ ଏକାବେଳକେ ରିଟାଏର୍ କରିବାକୁ ଦରଖାସ୍ତ ଦେଇଦିଅ ।
ପୀତାମ୍ବର—ପିଲାଏ କେହି ନାହାନ୍ତି କି ?
ମହାବୋଉ—କାହାକୁ ତ କାହିଁ ଦେଖୁନାହିଁ । ବାଡ଼ିପଟେ ଖେଳୁଥିବେ କି କ'ଣ ! ପିଲାଙ୍କୁ ଖୋଜୁଚ କାହିଁକି ?
ପୀତାମ୍ବର—ନାହିଁ, କେହି କୁଆଡ଼େ ନାହାନ୍ତି ବୋଲି ଦେଖିନ ଘରଦ୍ୱାର କେମିତି ନିଗୁଟିଆ ଲାଗୁଚି ।

ମହାବୋଉ—ଯାହା ଯୋଗୁଁ ଘରଦ୍ୱାର ହସି ଉଠନ୍ତା, ସିଏ ତ ଘର ଛାଡ଼ି ଯାଇ ବାହାରେ ରହିଲେ—

ପୀତାମ୍ବର—ବୋହୂ ଆସିଥିଲା ପରା···ଗଲାଣି ?

ମହାବୋଉ—ହଁ, ଏଇନେ ତ ହେଇ ଗଲା ।

ପୀତାମ୍ବର—ଆସିଥିଲା କାହିଁକି ?

ମହାବୋଉ—ମତେ ଆସି କହୁଥିଲା—ତାକୁ ଆଉ ସରକାରୀ ଘରେ ରହିବାକୁ ଭଲଲାଗୁନି । ମଧୁ ପଡ଼ିଛି ସେଠି ରହୁ, ସେ ଆସି ଏଠି ଆମ ପାଖରେ ରହିବ ।

ପୀତାମ୍ବର—ସେଇଠୁ ?

ମହାବୋଉ—ମୁଁ ନାହିଁକଲି ବୋଲି ଝର ଝର ହେଇ କାନ୍ଦିପକେଇଲା ।

ପୀତାମ୍ବର—କାନ୍ଦିଲା ?

ମହାବୋଉ—ତା' କାନ୍ଦ ଦେଖି ଭଲିଯିବା ମନ ମୋର ଆଉ ନାହିଁ, ସବୁ ଜଣାପଡ଼ିଯାଇଚି । ଦେହରେ ଯେତକ ରୂପ--ପେଟରେ ଯେତକ ପାପ, ମନ ଭିତରେ ସେତକ କୁପାଞ୍ଚ । ଯାହା କହନ୍ତି ମହାକାଳ ଫଳ । ···ଏମିତି ସୁନ୍ଦରେ ତା' କାମ ସେ କରିଗଲା, ଦାଇ ପଡ଼ିଶା, ବନ୍ଧୁ-ବାନ୍ଧବ ସମସ୍ତେ ଜାଣିଲେ କାବେଶ୍ଚ ପର ବୋହୂ ଭାଗ୍ୟରେ ଥିଲେ ମିଳେ । ···ଆଉ ତା' ଯୋଗୁଁ ଯେ ଗୋଟାଏ ସଂସାର ଉଚ୍ଛନ୍ନ ହେଇଗଲା ସେ କଥା ବୁଝିବ କିଏ—ଜାଣିବ କିଏ ?

ପୀତାମ୍ବର—ହୁଁ ।

ମହାବୋଉ—ତମର ହଉଚ କ'ଣ—କ'ଣ ଏମିତି ଭାବୁଚ ତମେ ?

ପୀତାମ୍ବର—ମହାବୋଉ ! ମୁଁ କାଇଁକି ମାଧୁଆ କଥା ମୋଟେ ଭୁଲିପାରୁନି । ତମେ ଏତେ କଥା କହିଯାଉଚ, ମୋ ମନରେ ଖାଲି ସେଇ ମାଧୁଆ କଥା ।

ମହାବୋଉ—ଭାବିଲେ ଆଉ ହବ କ'ଣ ? ଠାକୁରେ କରନ୍ତୁ କେମିତି ସେ ଭଲରେ ଘରସଂସାର କରୁ । (ଭିକା ବାହାରୁ ଆସିଲା—ହାତରେ ଦୁଖଣ୍ଡ ଚିଠି ।)

ଭକା—ଡାକବାଲା ଦେଇଗଲା—ଚଠି । (ପୀତାମ୍ବରଙ୍କୁ ଦେଲା)

ମହାବୋଉ—ଦ'ଖଣ୍ଡ ଚଠି—କିଏ ଦେଇଚ ? ମାୟା ଦେଇଚ କ ?

ପୀତାମ୍ବର—ହଁ, ଏ ଖଣ୍ଡକ ମାୟା ଦେଇଚ—ଆଉ ଏ ଖଣ୍ଡକ—ଓ, ପୁଷ୍ପର ତମର ସେଇ ସଙ୍ଗାତ—ସେଇ ଦେଇଚନ୍ତ ।

ମହାବୋଉ—ପଢ଼ ।

ପୀତାମ୍ବର—ମାୟା ଲେଖିଚ···(ପଢ଼ିଲେ) ବାପା, ବୋଉ, ତମ ଚଠି ପାଇଚ । ମୁଁ ଏଠି ଭଲରେ ଅଛୁ । ମୋର କଛି ଅସୁବିଧା ନାହିଁ । ମୁଁ ଖୁବ୍ ଭଲରେ ଅଛୁ । ପିଲାମାନେ କେମିତ ଅଛନ୍ତ ? ମୋର ପ୍ରଣାମ ନେବ । ···"ମାୟା"···ପୁନଶ୍ଚ—ବାପା, ମତେ କହଥିଲ, ମୁଁ ଭଲରେ ରହଲେ ତୁମର ଶାନ୍ତ । ମୁଁ ତ ଭଲରେ ଅଛୁ, ଫେରନ୍ତା ଡାକରେ ତମର ଭଲ ଖବର ଯେମିତ ମୁଁ ପାଇବ ।

ମହାବୋଉ—ହଁ, ସଙ୍ଗାତ କ'ଣ ଲେଖିଚନ୍ତ ?

ପୀତାମ୍ବର—(ପଢ଼ିଲେ) ସଙ୍ଗାତ, ତମ ଝିଅ ଖବର ଗୁପ୍ତରେ ବୁଝି ତମକୁ ଜଣେଇବ ବୋଲ ତମେ ଲେଖିଚ । କ'ଣ ଲେଖିବ ? ସତ କଥାଟା ଲେଖୁଚ ବୋଲ ମତେ ଦୋଷ ଦବନାହିଁ । ମାୟାର ଶାଶୁ ଟିକିଏ ଦୁଷ୍ଟ ପ୍ରକୃତର ଲୋକ । ତହିଁକି ପୁଣି ସବୁଦନ ରୋଗିଣା । ଘର ଗୋଟାଯାକର କାମ ମାୟା ସବୁ କରୁଚ । ··ହେଲେ କଥାକଥାକେ ସେ ତା' ଉପରେ ଚଢ଼ଚଢ଼ ହଉଚନ୍ତ । ମୁଁ ଆଖିରେ ଦେଖିଚ—ପହଲେ ପହଲେ ମାୟା ଜବାବ ଦବାକୁ ତିଆର ହୋଇ ଉଠୁଥିଲା—ଏଇନେ ଶାଶୁ ଯେତେ ଯାହା କହଲେ ବ, ସବୁ ଏ କାନରେ ପୂରେଇ ସେ କାନରେ ବାହାର କରଦଉଚ । ମୁହଁରେ ଯେମିତ ହସ—ପେଟ ଭିତରେ ସେମିତ ଦଫା । ତା'ର ସେଇ ଏକ୍ କଥା—"ସବୁ କଥାକୁ ଧର ବସିଲେ ମଣିଷ କ'ଣ, ଦେବତା ବ ସୁଖରେ ଘର ବାନ୍ଧ ରହପାରବ ନାହିଁ ।" —ଏଇଥିରୁ ସବୁ ବୁଝିବ—ଅଧିକା ଆଉ କ'ଣ ଲେଖିବ ?

ମହାବୋଉ—ଏମିତ ଭଲରେ ତା'ହେଲେ ସେ ଅଛୁ ! ତମେ ଆଜ ଚଠି ଲେଖ ।

ପୀତାମ୍ବର—କାହା ପାଖକୁ ଲେଖିବ ମଣିବୋଉ…କ ଚିଠି ଲେଖିବ ?

ମଣିବୋଉ—ଶଶୀ ପାଖକୁ ଲେଖ—ସେ ତା' ବୋଉକୁ ତାଗିଦ୍ କରିଦେଉ ।

ପୀତାମ୍ବର—ନା ମଣିବୋଉ, କିଛି ଲେଖିବା ଦର୍କାର ନାହିଁ ।

ମଣିବୋଉ—ଲେଖିବ ନାହିଁ ?

ପୀତାମ୍ବର—କ'ଣ ଲେଖିବ ? ତମେ ନିଜେ ପରା କହୁଥିଲ, ମୋହନର ଶାଶୁ ତା' ପାଖକୁ ଯୋଉ ଚିଠି ଲେଖେ—

ମଣିବୋଉ—ସିଏ ତ ମଣିକୁ ଆଉ କାବେରୀକୁ କୁ-ଶିକ୍ଷା ଦେଇ ଚିଠି ଲେଖିଥିଲେ !

ପୀତାମ୍ବର—ସିଏ ପରଘରକୁ ଗଲଣି, ତାକୁ ସୁ-ଶିକ୍ଷା ଦବାର ଅଧିକାର ମଧ ଆମର ନାହିଁ ମଣିବୋଉ । ତମେ ଶଶୀ ପାଖକୁ ଚିଠି ଲେଖିବ—ସେଇ ଚିଠି ପାଇ ଯଦି ଶଶୀର ମନ ତା' ବୋଉ ପାଖରୁ ଭାଙ୍ଗିଯାଏ—ଆଉ ମୋହନ ପରି ସେ ଯଦି ମାଧ୍ବୀକୁ ନେଇ ଅଲଗା ବସା କରି ରହେ—ତା'ହେଲେ ?

ମଣିବୋଉ—ଏମିତି ତା'ହେଲେ ସବୁ କଥା ସେ ଅନ୍ୟାୟରେ ସହୁଥିବ ?

( କାନ୍ଦୁଥାନ୍ତି )

ପୀତାମ୍ବର—ସବୁ କଥା ଅନ୍ୟାୟରେ ସହିସିବାଭଳି ଝିଅ ସେ ନୁହେ ମଣିବୋଉ । ଅନ୍ୟାୟର ବି ଗୋଟାଏ ସୀମା ଅଛି । ସେ ସୀମା ବାହାରକୁ ଯଦି କେହି ଚାଲିଆସେ, ତା'ହେଲେ ଜଳନ୍ତା ନିଆଁ ପରି ଜଳଉଠି ମାଧ୍ବୀ ନିଜେ ସେ ନିଆଁରେ ପୋଡ଼ି ଭସ୍ମ ହେଇଯିବ ସିନା କାହାର ସଂସାରକୁ ସେ ଜାଳି ଦବ ନାହିଁ । …ମାଆ ମୋର ଭଲରେ ଅଛି…ଖୁବ୍ ଭଲରେ ଅଛି—ଖୁବ୍ ଭଲ !!

( କହି କହି ଭିତରକୁ ଚାଲିଗଲେ )

# ତୃତୀୟ ଦୃଶ୍ୟ

( ମୋହନର ସରକାରୀ କ୍ୱାଟର୍‌ର ଗୋଟିଏ କକ୍ଷ । ଘରଟି ବେଶ୍ ସୁନ୍ଦର ଭାବରେ ସଜ୍ଜିତ । ରେଡ଼ିଓ ପାଖରେ ବସିଛି ମୋହନ । ମୁହଁରେ ଗଭୀର ଚିନ୍ତା-ରେଖା ପରିସ୍ଫୁଟ । ଅଦୂରରେ କାବେରୀ । ହାତରେ ସୂକ୍ଷ୍ମ ସୀବନ ଉପକରଣ । ରେଡ଼ିଓରୁ ଏକ ଗୀତ ଦୁହେଁ ଶୁଣୁଛନ୍ତି । )

( ଗୀତ )

କୋଇଲି କାଣେ ସେ, କୁଆ ବସାରେ ତ
ବଢାଇଛୁ ତାର ଶ୍ରେଷ୍ଠ ସଧାର,
କାଣେ ବୋଲି ସିନା, ଦୁଇ କୂଳ ଜଗି
ରଖେ ନାହିଁ ଭେଦ ଆପଣା ପର ॥
କୁଆ ଭବେ ଯେବେ ଶୁଣିବ ସେ କାଆ
ପାଳି ପୋଷି କଲେ ହେବ ତାର ସାହା—
ପାଇ ତା' ସେନେହ, ଭୁଲିଯାଏ ସବୁ,
କରେ ନିତି ତାକୁ କୋଟି ଆଦର ॥
ଏ ସୁଖ୍ ଅଧିକ ପାଇବାର ଲାଗି,
କୁଆର ସଧାରେ ହେଲେ ସେ ଯୋହାଗୀ,
କୋଇଲିପଣିଆ ହୁଏ ଅକାରଣ,
କଣବ ସେ ଯେବେ ବାଛବିଚାର ।
ଜନମ ହେଲେ ତ ଯିବ ଏଇ ବାଟେ
ବଡ଼ା ହେଲେ ଖାଲି ବୁଲିବ ଅବାଟେ
ଅମଡ଼ା ମାଟରେ ଯାଏ ଆମ୍ଭେ କେତେ,
ଏଇ ବାଟ ତାର ଜୀବନେ ସାର ॥

( ଗୀତଟି ଶେଷ ନ ହେଉଣୁ କାବେରୀ ଉଠିଆସି ରେଡ଼ିଓ ବନ୍ଦ କରିଦେଲା । )

ମୋହନ—ଏ କଣ ? ବନ୍ଦ କରଦେଲ କାହିଁକ ?

( ପୁଣି ଖୋଲବାକୁ ଯାଉଥିଲ )

କାବେରୀ—( ବାଧାଦେଇ ) ଥାଉ···

ମୋହନ—କାହିଁକ ?

କାବେରୀ—ବାଜେ ଗୀତଟା—ଭଲଲଗୁନ ।

ମୋହନ—ବୁଝିଲ ।

କାବେରୀ—କ'ଣ ବୁଝିଲ ?

ମୋହନ—ଅତି ଅସୁନ୍ଦର, କୁତ୍ସିତ ମନ ନେଇ ଏମିତି ଏକ ସୁନ୍ଦର ଜିନଷକୁ କେହି ଗ୍ରହଣ କରପାରେନା ।

କାବେରୀ—ମାନେ ?

ମୋହନ—ମାନେ ବୁଝେଇବାକୁ ଗଲେ କହିବ—ଏ ଗୀତଟା ଯେମିତି କିଏ ଠିକ୍ ତମକୁ ଉଦ୍ଦେଶ୍ୟ କର ଲେଖିଥିଲ । ଗୀତଟାରେ ଅତି ନଷ୍ଠୁର ଭାବରେ ତମର ଦୁର୍ବଳତାତକ ଧରାପଡ଼ଯାଇଚ । ସେଇଥିପାଇଁ ତମେ ଗୀତଟାକୁ ସହି ପାରଲ ନାହିଁ ।

କାବେରୀ—କ'ଣ ହୋଇଚ ତମର ?

ମୋହନ—କଛି ନାହିଁ···(ଚାଲି ଯାଉ ଯାଉ ପୁଣି ଫେର) ଭୁଲଯାଇଥିଲ ।

(ଡ୍ର ଭିତରୁ ଗୋଟାଏ ଲଜେନ୍ସ୍ ଟିଣ ବାହାର କର) ଏଇଟା ରଖ— ଗୋଟାଏ ଲଜେନ୍ସ ଟିଣ ।

କାବେରୀ—ଲଜେନ୍ସ ଟିଣ !

ମୋହନ—ଜଣେ ପୁରୁଣା ସେଗୀ ଘରକୁ ଯାଇଥିଲ । ତା'ର ଲଜେନ୍ସ ଦୋକାନ । ସେଇ ଦେଇଚ ।

କାବେରୀ—ମୋତେ କାହିଁକ ଦେଲ ସେ ? କ'ଣ ହେବ ?

ମୋହନ—ସେଇ କଥା ଭାବୁଚ କାବେରୀ—କ'ଣ ହେବ ଏ ଲଜେନ୍ସ ?···
ଆଜ ମୋ ହାତରେ ଏ ଟିଣଟା ଦେଖିଥିଲେ ପହ୍ଲ ଆନନ୍ଦରେ ମୋ କୋଲକୁ ଡେଇଁ ପଡ଼ଥାନ୍ତା । ପରୁ, ରଞ୍ଜନ "ଭାଇ" "ଭାଇ" ବୋଲ ବାଟ ଓଗୁଡ଼ ନଥାନ୍ତେ—ବାପା ଦୂରରେ ଠିଆ ହୋଇ ହସୁଥାନ୍ତେ—

ବୋଉ ବରକ୍ତ ହେଉଥାନ୍ତା—ଆଉ ମାୟା ଥିଲେ, ଜୋର୍ କରି ମୋ ହାତରୁ ଟିକେଟା ଛଡ଼େଇନେଇଥାନ୍ତା !

କାଦେମ୍ବି—ଆଜି ହେତକ ହୋଇପାରିଲ ନାହିଁ ବୋଲି ମତେ ଏ କଥା କହିବା ପାଇଁ ଏଇଟାକୁ ତମେ ଏଠିକି ନେଇ ଆସିଚ !

ମୋହନ—ସେଇ ଘର ଅଛି—ସେଇ ବାପା, ବୋଉ, ପରୁ, ରଞ୍ଜନ, ପହ୍ଲାଦ ସମସ୍ତେ ଅଛନ୍ତି—ସେ ଘରର ବଡ଼ ପୁଅ ମୁଁ—ସମସ୍ତଙ୍କ ସ୍ନେହ ଶ୍ରଦ୍ଧା, ଆଶା-ଭରସାର ପାତ୍ର । କିନ୍ତୁ ଆଜି ଏ ଟିକେଟା ନେଇ ସେମାନଙ୍କ ପାଖରେ ଠିଆହବାର ସାହସ ମୋର ହେଲା ନାହିଁ କାହିଁକି ? କାହିଁକି ମୁଁ ଅପରାଧୀଙ୍କ ପରି ଏଠିକି ଗୁଲିଆସିଲି ?

କାଦେମ୍ବି—ତମେ ତା'ହେଲେ କହୁଚ ଯେ ମୁଁ ଚିରଦିନ ତମ ଘରେ ଗୋଟାଏ ଦାସୀ ପରିବାସୀ ପରି ଖଟି ତମ ବୋଉଙ୍କ ଗୋଡ଼ଧୂଆ ପାଣି ପିଉଥାନ୍ତି ?

ମୋହନ—ଏଥିପାଇଁ ତମେ ମୋ ବୋଉକୁ ଦୋଷ ଦେଉଚ କାଦେମ୍ବି ? କେବେ କେଉଁଠି ତ ସେ ତମଠୁ ଏ ସମ୍ମାନ ତା' ନିଜ ତରଫରୁ ଦାବୀ କରି ନ ଥିଲା । ଶସ୍ତାରେ ନାଁ ପାଇବ ବୋଲି, ତମେ ଜଣେ ବି. ଏ. ପାଶ୍ ଝିଅ ହୋଇ, ଯେମିତି ଅତି ନିର୍ବୋଧ ନିର୍ବୋଧ ସୁକୁମାରୀ ବୋହୂଟି ପରି ଅଭିନୟ କରିଆସିଲ, ମହାକାଳ ଫଳ ପରି ତମର ସବୁ ଦୁର୍ଗୁଣକୁ ଅତି ଚମତ୍କାର ଭାବେ ପେଟ ଭିତରେ ତାଙ୍କି ଉପରେ ଯେଉଁ ଛଳନା ଯେଉଁ ଗୁରୁରି ଖେଳାଇଦେଲ, ତା'ର ଫଳ କ'ଣ ହବ ଜାଣ କାଦେମ୍ବି ! ହୁଏତ ଏଣିକି କେହି ଶାଶୂ ଶଶୁର ତମ ପରି ପାଠୋଇ ଝିଅକୁ ବୋହୂ କରିବାକୁ ସାହସ କରିବେ ନାହିଁ ।

କାଦେମ୍ବି—ଆଉ ସାହସ କରିବେ ତମ ଗୁଣବତୀ ଭଉଣୀ ମାୟା ପରି ପାଠୋଇ ଝିଅକୁ ବୋହୂ କରିବାକୁ, ନା ?

ମୋହନ—ଶୁଣିଚ ମାୟା ମୁହେଁ ମୁହେଁ ତା ଶାଶୁଙ୍କୁ ମନା କରି ଦେଇଥିଲା, ତାଙ୍କ ପାଦଧୂଆ ପାଣି ସେ ପିଇବ ନାହିଁ ବୋଲି । ତମେ ଏତକ କରି-ପାରିଥିଲେ କାହାର ଆଜି କିଛି ଦୁଃଖ ନଥାନ୍ତା ।

କାବେରୀ—କିନ୍ତୁ ତମେ ମତେ କହିପାରିବ କି—ଏ ଦୁଃଖଟା କାହାର ? ଘରେ ବାହାରେ ସମସ୍ତଙ୍କ ମୁହଁରେ ଯେତେବେଳେ ମୋ ପ୍ରଶଂସା, ସେତେବେଳେ ତମର ଏ ଦୁଃଖ ହେଉଛି କାହିଁକି ?

ମୋହନ—ମୋର ଦୁଃଖ ଏଇଥିପାଇଁ ଯେ, ମୁଁ ସବୁ ଜାଣିଶୁଣି ଏମିତ ଅସହାୟ ହୋଇପଡ଼ିଚି । ଶିକ୍ଷିତ ଭଦ୍ର ପରିବାରରେ ମୋର ଜନ୍ମ—ନିଜେ ଶିକ୍ଷିତ —ହାତ ଗୋଡ଼ରେ ମୋର ଭଦ୍ରତାର ବେଡ଼ି । ସେଇଥିପାଇଁ ଅନୁତାପରେ ପାଗଳ ହେଉଥିଲେ ସୁଦ୍ଧା, ଅଶାନ୍ତ ଅଭି ଲୋକଲଜ୍ଜା ଭୟରେ କିଛି କରିବାର ଉପାୟ ମୋର ନାହିଁ ।

କାବେରୀ—ଘରସଂସାର ବାନ୍ଧିବାକୁ ହେଲେ ସମସ୍ତଙ୍କୁ ଏଇ ବାଟରେ ଚାଲିବାକୁ ହୋଇଥାଏ ।

ମୋହନ—କିନ୍ତୁ ତମେ ଯୋଉ ସଂସାର ବାନ୍ଧିବାକୁ ଯାଉଚ, ସେଠି ତମର ପରିଚୟ—ପୀତାମ୍ବରବାବୁଙ୍କ ଘରର ବୋହୂ ନୁହେଁ—ସେଠି ହେବ ତମେ ଡାକ୍ତର ମୋହନର ସ୍ତ୍ରୀ କାବେରୀ ଦେବୀ । ତମ ନିଜ ସଂସାରରେ ତମେ ମାଲିକ—ତମ ନିଜ ଘରର ତମେ ଗୃହିଣୀ ।

କାବେରୀ—ଏକା ମୁଁ ନୁହେଁ—ଦୁନିଆରେ ପ୍ରତ୍ୟେକ ଗୃହିଣୀର ଏ ଲୋଭ ଟିକିଏ ରହିଚି । ମୋର ଯୋଉ ଚେନ୍‌ଟା ମାଆ ସଉକରେ ନେଇ ଛଅ ମାସ କାଳ ପିନ୍ଧିଥିଲେ ସେଇଟାକୁ ମୁଁ ତାଙ୍କ ବାହାବେଳେ ତାଙ୍କୁ ଦେଲି ନାହିଁ ବୋଲି ତମେ ଦୁଃଖ କରୁଥିଲ ପରା ?

ମୋହନ—ଚେନ୍‌ଟା ଦେଲିନାହିଁ ବୋଲି ଦୁଃଖ କରୁ ନଥିଲି, ମୁଁ ଦୁଃଖ କରୁଥିଲି ସେଇଥିପାଇଁ ଯେ, ଚେନ୍‌ଟା ତମ ବାକ୍‌ସରେ ଅଛି—ଅଥଚ ତମେ ମାଆ ଆଗଟିରେ ମୁହଁଟାଏ ଗଲେଇଦେଇ, ଝର ଝର ହୋଇ କାନ୍ଦି କୈଫିୟତ ଦେଲ ଯେ, ଏଥର ତମେ ବାରିପଦା ଯାଇଥିଲାବେଳେ ଚେନ୍‌ଟା ସେଠି ଭୁଲରେ ଛାଡ଼ିଆସିଚ ବୋଲି ମାଆକୁ ଦେଇପାରିଲ ନାହିଁ ।

କାବେରୀ—କିନ୍ତୁ କାହିଁ—କେହି ତ ମୋ କଥାକୁ ଅବିଶ୍ୱାସ କଲେ ନାହିଁ—ଅଥଚ ତମର ଦୁଃଖ ହଉଚି କାହିଁକି ?

ମୋହନ—ମୋ ଦୁଃଖ ତମେ ବୁଝି ପାରିବ ନାହିଁ, କାବେରୀ—କାରଣ ସେମାନଙ୍କ ସହିତ ରକ୍ତର ସମ୍ପର୍କ ତମର ନାହିଁ—ଅଛି ମୋର । ସୋଉମାନେ ଚିରଦିନ ମୋ ଉପରେ ଏତେ ନିର୍ଭର, ଏତେ ବିଶ୍ୱାସ ରଖି ଆସିଥିଲେ—ସେମାନଙ୍କ ପାଖରେ ଏ ଅଭିନୟ, ଏ ଛଳନା—

କାବେରୀ—ଅଭିନୟ ଯଦି ମୁଁ କରୁଥାଏ, କାହାପାଇଁ କରୁଚି ? ସେଇ ମାସ୍ଟର ବାହାଘରରେ ବାପା ଯେମିତି ହାତଖୋଲି ଖର୍ଚ୍ଚ କରିଚନ୍ତି, ତମେ ଘରେ ରହିଥିଲେ ଘରର ରୋଜଗାରିଆ ପୁଅ ବୋଲି ସେ ଧକ୍କା ତମକୁ ଲଗିଥାନ୍ତା । ଏଠିକି ଆସି ଏ ମାସ କେଇଟାରେ ଲଭ ହେଇଚି କ’ଣ ଜାଣ ? ଆଉ ସବୁ ଛାଡ଼ି ଏକା ବ୍ୟାଙ୍କରେ ରହିଲଣି ତିନି ହଜାର ଟଙ୍କା ।

ମୋହନ—ଥାଉ କାବେରୀ, ତମ ଘରସଂସାରର ହିସାବ ତୁମେଇ ରଖ । ଦିନେ ତମପାଇଁ ଘରେ ସମସ୍ତଙ୍କ ବିରୁଦ୍ଧରେ ମୁଁ ଓକିଲତି କରିଥିଲି । ତମରି କଥା ରକ୍ଷା କରି ଘର ଛାଡ଼ି ଏଠିକି ଗୁଲି ଆସିଲି । କିନ୍ତୁ ଆଜି ମୁଁ ଏକାବେଳକେ ଉପାୟହୀନ । (ଗୁଲିଯାଉଥିଲି ।)

କାବେରୀ—କୁଆଡ଼େ ପୁଣି ଯାଉଚ ?···ନା ଆଜି ତମେ ବୁଲି ଯାଇପାରିବ ନାହିଁ । ବୋଉ ମୋର ଅନେକ ଦିନୁ ଚିଠି ଦେଲଣି—ଏ ପର୍ଯ୍ୟନ୍ତ ତା ପାଖକୁ ଚିଠି ଖଣ୍ଡେ ବି ଲେଖା ହେଇପାରିଲି ନାହିଁ । ତମେ ବସ···ନିଜ ହାତରେ ତମେ ଆଜି ତା ପାଖକୁ ଚିଠି ଲେଖ । (ଜୋର୍‌କରି ମୋହନଙ୍କୁ ଆଣି ବସେଇ ଦେଲା ।)

ମୋହନ—ଆଜି ସକାଳି ଡାକରେ ତମର ଖଣ୍ଡେ ଚିଠି ଆସିଥିଲା ।

କାବେରୀ—କାଇଁ, ମୁଁ ଦେଖିନି ତ ।

ମୋହନ—ମୁଁ ପୂଝାରୀ ହାତରେ ପଠେଇ ଦେଇଥିଲି ତମପାଖକୁ ।

କାବେରୀ—କୋଉଠୁ ଚିଠି ଆସିଚି ?

ମୋହନ—ତମ ବୋଉ ପାଖରୁ ।

କାବେରୀ—ତମେ ପଢ଼ିଥିଲ କି ?

ମୋହନ—ନା ।

କାବେରୀ—କଥା ଶୁଣ ! ମୋ ଚିଠିଟା ପଢ଼ିବାକୁ ତମକୁ ବାଧିଥିଲା କାହିଁକି ? କେବେ ଯେ ଏ ପିଲାଳିଆ ଢଙ୍ଗ ଯିବ—ଦେଖେଁ ମୁଁ କ'ଣ ଚିଠି ଆସିଚି । (ଚାଲିଗଲା । କିଛି ପରେ ଆସିଲା ଭିକା)

ମୋହନ—କିରେ ଭିକା ?

ଭିକା—ବଡ଼ବାବୁଙ୍କ ଦେହ ପୁଣି କଣ ହଉଚି—ମା' କହିଲେ ଆପଣ ଆସନ୍ତୁ ।

ମୋହନ—କ'ଣ ହଉଚି ?

ଭିକା—ସେଇ ମୁଣ୍ଡ ତ କ'ଣ ହଉଚି । ଘର ବ୍ୟସ୍ତ ହେଉଚନ୍ତି, ଆପଣ ଆସନ୍ତୁ···ମା କାହାନ୍ତି ?

ମୋହନ—ଆଚ୍ଛା, ତୁ ଯା—ମୁଁ କାବେରୀକୁ ସାଙ୍ଗରେ ନେଇ ସାଙ୍ଗେ ସାଙ୍ଗେ ଯାଉଚି ।

ଭିକା—ହଉ ଆଜ୍ଞା । (ଯାଉ ଯାଉ ପୁଣି ଅଟକି) ବାବୁ···

ମୋହନ—ପୁଣି କ'ଣ ?

ଭିକା—ନାଇଁ ବାବୁ, ମା' ଆଜି ବଡ଼ବାବୁଙ୍କୁ କହିଲେ—ତମ ଦେହ ଏମିତି —ମୁଁ ବୋହୂକୁ ଏଠିକି ନେଇ ଆସିବି ।

ମୋହନ—ବାପା କ'ଣ କହିଲେ···?

ଭିକା—ବାବୁ କହିଲେ···ତା'ର ଡାକ୍ତର ଚାକିରି । କ୍ୱାଟରରେ ନ ରହିଲେ ବଦ୍‌ନାମ ହବ । ଆଉ ପୁଅ ସେଠି ରହି, ବୋହୂ ଏଠି ରହିଲେ ଖିଆପିଆର ଅସୁବିଧା ହବ । ସେମାନେ ସେଇଠି ରହନ୍ତୁ ।

ମୋହନ—ଆଚ୍ଛା—ଆଚ୍ଛା—ତୁ ଯା—ଆମେ ଯାଉଚୁ (ଭିକା ଚାଲିଗଲା ।) କାବେରୀ···କାବେରୀ···(ହାତରେ ଖୋଲା ଚିଠି ଖଣ୍ଡିକ ଧରି କାବେରୀ ବ୍ୟସ୍ତ ହୋଇ ଆସିଲା ।)

କାବେରୀ—ଏଇ ଶୁଣୁଚି···

ମୋହନ—ଶୁଣିବାର ବେଳ ଆଉ ନାହିଁ କାବେରୀ । ବାପାଙ୍କ ଦେହ ଭଲ ନାହିଁ—ଭିକା ଏଇନେ ଆସିଥିଲା—ତମେ ଚଞ୍ଚଳ ଅସ, ଯିବା ।

କାବେରୀ—ମୁଁ ଆଉ ଯିବି କୁଆଡ଼େ ? ଏଇ ଚିଠି ପଢ଼ ଆସିଚି—ବୋଉ କାହିଁକି କି ଲେଖିଚି ଆମକୁ ବାରିପଦା ଯିବାପାଇଁ !

ମୋହନ—କାହିଁକି ?

କାବେରୀ—ଲେଖିଚି—ଆମକୁ କୋଉଦିନୁ ଦେଖିନି ବୋଲି ତା' ମନ ଭଲ ନାହିଁ—ଆମକୁ ଦେଖିବାପାଇଁ ସେ ଉଚ୍ଛନ୍ନ ।

ମୋହନ—ବେଶ୍ ତ, ଯିବାବେଳେ ଯିବ—ବର୍ତ୍ତମାନ ଅସ ।

କାବେରୀ—ମୁଁ ଆଜି ଯିବି—ଆଜି ମତେ ନେଇ ଛାଡ଼ିଦେଇ ଅସ । ବୋଉ ଏତେ ବ୍ୟସ୍ତ ହେଇ ଯେତେବେଳେ ଲେଖିଚି—

ମୋହନ—କାବେରୀ ! !

କାବେରୀ—ତମ ବାପାଙ୍କୁ ତମେ ଦେଖିବାପାଇଁ ଏମିତ ଅସ୍ଥିର ହେଇପଡ଼ୁଚ ତି—

ମୋହନ—କ'ଣ ତୁମେ କହିବାକୁ ଗ୍ରହୁଁଚ କାବେରୀ ?

କାବେରୀ—କିଛି ନାହିଁ । ତମେ ଯାଇ ବାପାଙ୍କୁ ଦେଖି ଚାଲିଆସ...ମୁଁ ଜିନଷପତ୍ର ବନ୍ଧାବନ୍ଧି କରୁଚ । ଆଜି ମେଲ୍‌ରେ ଆମେ ଯିବା ।...ହଁ, ଶୁଣ—ମୁଁ ଘରକୁ ଯିବାକୁ ବାହାରିଚି ବୋଲି ତମେ ବାପା ବୋଉଙ୍କୁ କିଛି କହିବ ନାହିଁ । କହିବ, ମୁଁ ଏଠିକି ଆସିଲାବେଳେ କାବେରୀ ଘରେ ନଥିଲା ।

ମୋହନ—ଚୁପ୍‌କର ତମେ । ଏ ପାଗଳାମୀ ଶୁଣିବାକୁ ମୋର ଧୈର୍ଯ୍ୟ ନାହିଁ ।

( ଗ୍ଲଲଗଲା )

କାବେରୀ—ଏତେ ହଠାତ୍ ଧୈର୍ଯ୍ୟ ହରାଇଲେ ଚଳିବ କେମିତ ? ସବୁଦିନେ ଶୁଣିଚ—ଆଜି ତମେ ନଶୁଣି ଆଉ ପୁଣି ଶୁଣିବ କିଏ ? ତମେଇ ଶୁଣିବ—ତମେ !

# ଚତୁର୍ଥ ଦୃଶ୍ୟ

(ପୀତାମ୍ବରବାବୁଙ୍କ ଘର । ଭକା ବାହାରୁ ଆସିଲା । ଭିତରୁ ଆସିଲେ ମହାବୋଉ ।)

ମହାବୋଉ—ହଇରେ ଭକା, ମହା କ'ଣ କହିଲା ?

ଭକା—ଆସୁଚନ୍ତି !

ମହାବୋଉ—କାହିଁ, କେତେବେଳେ ଆଉ ଆସିବ ?

ଭକା—କହିଲେ ତ—ତୁ ଆଗରେ ଯା—ମୁଁ ଯାଉଚି ।

ମହାବୋଉ—ବୋହୂ ଆସିବ ନା ନାହିଁ ?

ଭକା—ହଁ, ମାନବାବୁ କହିଲେ ତାଙ୍କୁ ସାଙ୍ଗରେ ନେଇ ଆସିବେ ।

ମହାବୋଉ—ଆସିବ ଆଉ କେତେବେଳେ ? ତୁ ହେଇଟି ଆସି ପହଞ୍ଚିଲୁ ଟି ? ସେ କାହିଁ ?

ଭକା—(ବାହାରକୁ ଚାହିଁ) ଏଇ ପରା ମା ବାବୁ ଆଇଲେଣି ! (ମୋହନ ଆସିଲା ।)

ମହାବୋଉ—ମହା ! (ଆଖିରେ ଲୁହ )

ମୋହନ—ବାପା କାହାନ୍ତି ବୋଉ—ଉପରେ ?

ମହାବୋଉ—ନା—ଏଇ ତଳ ଘରେ ଶୋଇଚନ୍ତି ।

ମୋହନ—ଚାଲ୍‌ଲୁ ଆଗେ ତାଙ୍କୁ ଦେଖେଁ ।

ମହାବୋଉ—ବୋହୂ କାହିଁ ଗଲା ? ବୋହୂ ଆସିଚି ପରା ?

ମୋହନ—(ଇତଃସ୍ତତଃ ହେଇ) ନା—ସେ ଆସିନାହିଁ । ମୁଁ ଆସିଲାବେଳେ ସେ ଘରେ ନଥିଲା—ଶୋଭାଦେବୀ ଡାକ୍ତରଣୀଙ୍କ ଘରକୁ ଯାଇଥିଲା ତୋ ଆଜିକଥା ତାଙ୍କୁ କ'ଣ ପଚାରିବ ବୋଲି ।

ମହାବୋଉ—ହୁଁ । ଏ ଆଖି ଆଉ ରହିଲେ କେତେ ଗଲେ କେତେ ?

ମୋହନ—ତୁ ଆସିଲୁ ବୋଉ—(ମୋହନ ଆଗେଇଲା ବେଳକୁ ପୀତାମ୍ବର ଭିତରୁ ଆସିଲେ । ସେ ଦୁର୍ବଳ ହେଇ ପଡ଼ିଚନ୍ତି । ପତ୍ନୀ କାନ୍ଧରେ ହାତ ରଖି ଆସିଲେ ।)

ପୀତାମ୍ବର—କଏ ଆସିଚ ମହାବୋଉ ? ମାୟା—ମାୟା ଆସିଚ ?
ମହାବୋଉ—ଏଁ···କ'ଣ, ତୁମେ ଉଠିଆସିଲ କାହିଁକି ?
ମୋହନ—ଉଠି ଆସିଲ କାହିଁକି ବାପା ? ଚାଲ ଶୋଇବ ଚାଲ !
ପୀତାମ୍ବର—ଓହୋ ! ଛାଡ଼ ମତେ । ଆଗେ କୁହ ମାୟା ଆସିଚ ?
ମହାବୋଉ—ମାୟା କାହିଁ ? ମାୟା କୋଉଠୁ ଆସିବ ?
ପୀତାମ୍ବର—ମୁଁ ଶୋଇଥିଲି, ମତେ ଯେମିତି ଶୁଣାଗଲା; ତମେ କହୁଚ—ମାୟା ଆସିଚ ।
ମହାବୋଉ—ମହୀ ଆସିବା କଥା ମୁଁ କହିଲି ଯେ, ସେଇଆ ତମକୁ ଶୁଭିଥିବ । ···ଚାଲ, ଚାଲିଲ ।
ପୀତାମ୍ବର—ଓ, ମହୀ ଆସିଚ—ମାୟା ଆସିନ ? (ସେଇଠି ବସିପଡ଼ିଲେ )
ମହାବୋଉ--ଏ ପୁଣି କ'ଣ ? ଏଠି ଏ ତଳଟାରେ ବସିଲ କାହିଁକି ?
ମୋହନ—ଚାଲ ବାପା, ଘର ଭିତରକୁ ଚାଲ ।
ପୀତାମ୍ବର—ମହାବୋଉ !
ମହାବୋଉ—ତମେ ଆଗେ ଶୋଇବ ଚାଲିଲ ।
ପୀତାମ୍ବର—ଏ ମାୟାଟା ମୋତେ ଭାରି ହଇରାଣ କଲା । ମୋଟେ ତା କଥା ମୁଁ ଭୁଲି ପାରିଲି ନାଇଁ । ଶୋଇଥିଲି···ପରୁ ମୋ ମୁଣ୍ଡ ଆଉଁସି ଦଉଥିଲା···ହଠାତ୍ ଯେମିତି ମନେହେଲା··· ମାୟା ମୋ ପାଖରେ ବସି ମତେ ଆଉଁସି ଦଉଚ । ଭାରି ସୁନ୍ଦର ନିଦ ହେଇଆସୁଥିଲା । ହେଲେ ଯେମିତି ପୁଣି ମନେପଡ଼ିଗଲା ଯେ ମୋ ପାଖରେ ମାୟା ନାହିଁ···ଆଉ ନିଦ ହେଲା ନାହିଁ ।
ପରୁ—ହଁ ପରି ବୋଉ, ମୁଁ ଯେତେ କରି କହିଲି ଆଉ ଶୋଇଲେ ନାହିଁ—ଖାଲି କାନ୍ଦିଲେ ।
ମହାବୋଉ—ଏ କଥାକୁ ମୋର ଆଉ ବଳ କ'ଣ କହିଲୁ ମହୀ ! ମୁଁ ତ କହିଲି, ହବୁବେଳେ ମାୟାକୁ ଖୋଜ ହଉଚ—ଚିଠି ଲେଖିଦିଅ—ସେ ଆସୁ । ମନା କରୁଛନ୍ତି—କ'ଣ ନା, ମାସ ଛଅଟା ବୋହୂପଣିଆ କରିନ—ଆସିବ କେମିତି ?

ପରୁ—ତମେ ଡାକ୍ତରଙ୍କୁ ପୁଣି ଅମ ଘରକୁ ନେଇଆସ ବାଇ ! ଡାକ୍ତର ଏଠି ରହିଲେ ବାପା ଆଉ ମାଧୁ଼ୀ ଅପାକୁ ଏତେ ଖୋଜନ୍ତେ ନାହିଁ । ନାହିଁ ଲେ ବୋଉ ?

ମସ୍ତାବୋଉ—ଓଃ ! ରହ ତୁ ପାଟି କରନା । ଶୁଣୁଚ ? ଏମିତ ମୁଣ୍ଡରେ ହାତ ଦେଇ ଏଠିଟାରେ ବସିଚ କାହିଁକି, କହିଲ ? ଉଠ, ମହୀ ତମକୁ ଦେଖିବାକୁ ଆସିଚ ପରା ।

ପୀତାମ୍ବର—ଉଁ ! ମହୀ ମତେ ଦେଖିବାକୁ ଆସିଚ ? ଭଲ କଥା—ଦେଖୁ । ସେ ଡାକ୍ତର ହୋଇଚ—ମୁଁ ରୋଗୀ—ମତେ ଦେଖିବ ନାହିଁ କାହିଁକି ? ଦେଖୁ । (ଉଠି ଭିତରକୁ ଗଲେ )

ମହାବୋଉ—ହାଇରେ ମହୀ, କ'ଣ ଏ କଥା କହିଲୁ ! ପଅରଦିନ ତ ଆସି ଦେଖି ଯାଇଥିଲୁ—ଆଜି ଏଇ ଦେଖ—କି ଅବସ୍ଥା ହେଲଣି । ହବୁ ବେଳେ . ତ ସେଇ ମୁଣ୍ଡ ମୁଣ୍ଡ ହଉଚନ୍ତି···ଆଉ ମାଧୁ଼ାକୁ ଖୋଜୁଚନ୍ତି । କ'ଣ କରିବ କହିଲୁ ? ମାଧୁ଼ା ପାଖକୁ ଖବର ପଠେଇବା—ସେ ଆସିବ ?

ମୋହନ—ତୁ ଖବର ପଠେଇଲେ କ'ଣ ସେ ଚାଲି ଆସିବ ? ତା ଶାଶୁ କେଉଁଠିଆ ଲୋକ—ତାକୁ କ'ଣ ଛାଡ଼ିଦେବ ?

ମହାବୋଉ—ତୁ ତ ଯେଇଭଳିଆ ଘରେ ନେଇ ତାକୁ ଥୋଇଚୁ···ସ୍ବାମୀଙ୍କ ଦେହ କଥା ଶୁଣିଲେ ମାଧୁ଼ା ଆସିବ ନାହିଁ ?

ମୋହନ—ମାଧୁ଼ା ନଆସିବା କଥା ମୁଁ କହୁନି ବୋଉ । ମୋର ଭୟ ହଉଚ ମାଧୁ଼ା ଶାଶୁ ହୁଏତ ତାକୁ ଛାଡ଼ିବ ନାହିଁ । ନହେଲେ ମାଧୁ଼ା ଯେମିତ ଝିଅ—ବାପାଙ୍କ କଥା ଶୁଣିଲେ ତ ସେ ଶାଶୁ, ଶଶୁର, ସ୍ବାମୀ କାହାରି ମୁହଁକୁ ନ ଚାହିଁ ଏଠିକି ଚାଲିଆସିବ । ତୁ ଟିକିଏ ଅପେକ୍ଷା କରି ଦେଖ, ଏଣେ କ'ଣ ହଉଚି । ···ମୁଁ ତ ଭାବୁଚି କାଲି ଡାକ୍ତର ତ୍ରିପାଠୀଙ୍କୁ ଡାକିବି—ସେ ଆସି ଥରେ ଦେଖନ୍ତୁ ।

ମହାବୋଉ—ତୁ ଯୋଉ ଡାକ୍ତରକୁ ଡାକ, ଯାହା କର, ତୁ ଆଜି ରାତିରେ ଯାଇ ମାଧୁ଼ାକୁ ନେଇଆ ।

(ମୋହନ ଓ ପରେ ପରେ ମହାବୋଉ ଭିତରକୁ ଗଲେ ।)

## ପଞ୍ଚମ ଦୃଶ୍ୟ

( ବୈଠକଖାନାରେ ଶଶୀଭୂଷଣ ଅତି ଅସ୍ଥିର ଭାବରେ, ଯେପରି କାହାକୁ ଅପେକ୍ଷା କରିଛନ୍ତି । ଟିକିଏ ପରେ ଆସିଲେ ସଦାନନ୍ଦ । )

ଶଶୀ—କ'ଣ ହେଲା—କ'ଣ କହିଲା ସେ ? ଟଙ୍କା ଦେବ ?

ସଦା—ଟଙ୍କା ଦେବାକୁ କ'ଣ ସେମାନେ କେବେ ଅରାଜି ହୋଇଥାନ୍ତି ?

ଶଶୀ—ତା'ହେଲେ ଚାଲନ୍ତୁ—ବର୍ତ୍ତମାନ ତା' ପାଖକୁ ଯିବା । ଆଜି ନ'ଟା ଭିତରେ ମୋର ଟଙ୍କା ଦରକାର···ଚାଲନ୍ତୁ—

ସଦା—ସେ ପରା ଟିକିଏ କେଁ ବାହାର କରୁଚି ।

ଶଶୀ—କେଁ ?

ସଦା—କହିଲା—ତିନିଶ ଗୁଣ୍ଡା ପାଁ'ଶ ଟଙ୍କା ଦେବାକୁ ମୁଁ ରାଜି ଅଛି—ହେଲେ···

ଶଶୀ—କୁହନ୍ତୁ ଶେଷ ପର୍ଯ୍ୟନ୍ତ କ'ଣ କହିଲା ?

ସଦା—କହିଲା ପରା—ବାବୁ ତ ସରକାରୀ ଅଫିସରେ କାମ କରୁନାହାନ୍ତି ଯେ ପହିଲା ଦିନ ଦରମା ପାଇ ଦୁଇ ତାରିଖ ଦିନ ସୁଧ ଗଣିଦେବେ !

ଶଶୀ—ହୁଁ, ତା'ହେଲେ ସେ ମନାକରିଦେଲା ।

ସଦା—ଏକାରକମ ମନା କଲା ନାହିଁ ଆଉ କ'ଣ ?

ଶଶୀ—କାବୁଲିବାଲା ବି ମତେ ଟଙ୍କା ଧାର ଦେବାକୁ ରାଜି ହେଲା ନାହିଁ ?

ସଦା—ମୁଁ ଯାହା ବୁଝିଲି ବାବୁ, ସେ ସୁଧ-ଫୁଧ କଥା ମିଛ । ଆପଣ ଓକିଲ ମଣିଷ—ଆପଣଙ୍କୁ ଟଙ୍କା ଦେବାକୁ ସେ ଡରିଲା ।

ଶଶୀ—କ'ଣ କରିବି କହିଲେ ସଦାନନ୍ଦବାବୁ—ଟଙ୍କା କେମିତି ଯୋଗାଡ଼ ହେବ ?

ସଦା—ଏମିତି ଗୋଟାଏ ଅସମୟ ପଡ଼ିଛି ଆଜ୍ଞା—ନହେଲେ ହାତରୁ ପଇସା ଖର୍ଚ୍ଚ କରି ସତ୍ୟବାଦୀଯାଏ ଯାଇ ଗୋଟାଏ ମହକିଲ ଯୋଗାଡ଼ କଲି—ଦୁଇଶ ଟଙ୍କାର ମହକିଲ । ଆଜି ନଗଦ ଶଏ ଟଙ୍କା ଦେଇଥାନ୍ତା ।

ଶଶୀ—କାହିଁକି, ହେଲା କ'ଣ ? ଆଜି ତା'ର ଠିକ୍ ଆସିବାର କଥା ନା ?

ସଦା—କାଇଁକି କହୁଚନ୍ତି ଆଜ୍ଞା । ଏଇନେ ଦେଖି ଆସିଲି ଶୁକବାବୁ ଓକିଲଙ୍କ ସିରସ୍ତାରେ ବସି ଟଙ୍କା ଗଣୁଚି । ମତେ ଦେଖି ଘରକା କଡ଼କୁ ଲୁଚିଗଲା । ମୁଁ ବି ଛାଡ଼ିବା ଲୋକ ନୁହେଁ । ଜବରଦସ୍ତ ଘର ଭିତରକୁ ପଶି କହିଲି—ଦେ' ମୋ ବାଟ ଖର୍ଚ୍ଚ ।

ଶଶୀ—ଛାଡ଼ନ୍ତୁ ସେ କଥା । ଟଙ୍କା କଥା କଣ ହବ କୁହନ୍ତୁ । ମୁଁ କେବଳ ଆପଣଙ୍କ ଉପରେ ଭରସା ରଖି ବସିଚି । ମହାନ୍ତଙ୍କ ସାଙ୍ଗରେ ଆଉ ବୋଧେ ଦେଖା ହେଇନି ?

ସଦା—ହିଁ, ଏଇନେ ଆସିଲାବେଳେ ହେଇ ବାଟେ ମୁହଁମାର ଆସିଲି ।

ଶଶୀ—କ'ଣ କହିଲେ ?

ସଦା—ହେଇ ଏକ କଥା—ଏବେ ତ ଘର ମୁକୁଲିଚି—ଆଉ ପୁଣି ଗୋଟାଏ ବନ୍ଧା ପଡ଼ିବ କଣ ? ଶଶୁର ଘର ଟଙ୍କାରେ ସିନା ଘର ମୁକୁଳେଇ ନେଲେ—ଏଣିକି ଯଦି ଟଙ୍କାର ଯୋଗାଡ଼ ନ ହୁଏ—ତା'ହେଲେ ଘର ତ ମୁକୁଳିବ ନାଇଁ—କେବଳ ମାଲିମକଦ୍ଦମା ଲାଗିବା ହିଁ ସାର ହେବ ।

ଶଶୀ—ତା'ହେଲେ ମନାକରିଦେଲେ !

ସଦା—ହିଁ । କହିଲେ—ବନ୍ଧା କଥା ନୁହେଁ, ବିକିଦେବେ ତ ଦିଅନ୍ତୁ—ଆଜି କବଲା ହବ ।

ଶଶୀ—ବିକିଦେବି ? ବୋଉର ଦେହ ଭଲ କରିବାପାଇଁ ନିଜର ଘର ଖଣ୍ଡିକ ବିକିଲେ, ବୋଉ ତ ସେଇ ଚିନ୍ତାରେ' ଆଗେ—

ସଦା—ମୁଁ ଗୋଟାଏ କଥା କହୁଚି ଆଜ୍ଞା !

ଶଶୀ—କ'ଣ ?

ସଦା—ଘରଟା ବିକିବା ଅବଶ୍ୟ ଅବିବେକର କାମ ହବ । ମୁଁ କହୁଥିଲି—ଘର ପଛକୁ ଯୋଉ ଖାଲି ଜାଗା ଖଣ୍ଡିକ ଅଛି—ଶୁଣେ କି ଦେଢ଼ ଗୁଣ୍ଠ ହବ—ସେ ଖଣ୍ଡିକ ବିକିଦେଲେ ତ—

ଶଶୀ—ମୋର ଆପତ୍ତି ନ ଥିଲା । କିନ୍ତୁ ଆପଣ ତ ନିଜ ଆଖିରେ ଦେଖୁଚନ୍ତି —ଏଇ ଦିନ କେତୁଟାରେ ମାୟା ନିଜ ହାତରେ ହାଣିକୁଟି କେଡ଼େ ସୁନ୍ଦର ଫଳ-ଫୁଲ-ପନିପରିବାର ବଗିଚାଟିଏ ସେଠି କଲଣି !

ସଦା—ଠିକ୍ କହୁଚନ୍ତି ବାବୁ ! ମୁଁ ନିଜେ ମୋ ମା'କୁ ଆଣି କେତେ ରକମର ଫୁଲ ଗଛ, ଶାଗ ମଞ୍ଜି ଯୋଗେଇଦେଇଚି—ସେ ଜମି ବିକିଲେ ମା' ମୋର ଦେହ ଧରି ରହିପାରିବେ ନାହିଁ । ଆପଣ ଟିକେ ଧୈର୍ଯ୍ୟ ଧରି ରୁହନ୍ତୁ ଆଜ୍ଞା—ଟଙ୍କା କଉ ମିଳିବ ନାହିଁ—ଟଙ୍କା ମିଳିବ ।

ଶଶୀ—କୋଉଠି ଅଉ ମିଳୁଚି । ଆଉ ପ୍ରାୟ ଘଣ୍ଟାଏ ପରେ ଡାକ୍ତର ଆସିବେ···ତାଙ୍କ ସାଙ୍ଗରେ ବୋଉକୁ ନେଇ ଏକ୍ସ-ରେ ପାଇଁ ଯିବି । କାଲି ଭିତରେ ଏକ୍ସ-ରେ ରିପୋର୍ଟ ଆଉ ଟଙ୍କା କଲିକତା ପଠାହେବ ।

ସଦା—ମନେ ପଡ଼ୁଚି ଆଜ୍ଞା—ଆପଣଙ୍କ ବନ୍ଧୁ ସେ କେଦାର ବାବୁ—ଏଇ ଦି'ଦିନ ହବ ପୁରୀ ଆସିଚନ୍ତି—ମୁଁ ଦେଖିଚି । ଠିକାଦାରୀ କରି ତ ହଜାର ହଜାର ଟଙ୍କା କମଉଚନ୍ତି ।

ଶଶୀ—କେଦାରକୁ ମାଗିଥିଲି—କିନ୍ତୁ ସେ ମତେ ଯାହା କହିଲା ନା ! (କହି କହି ମାୟା ଆସିଲା)

ମାୟା—ଏତେ ସହଜରେ ଟଙ୍କା କ'ଣ କେହି କାହାକୁ ଦିଏ ସଦାନନ୍ଦବାବୁ ? କାହିଁକି ଏତେ ଲୋକଙ୍କ ପାଖରେ ମୁହଁ ହାରଉଚନ୍ତି ? (ଶଶୀ ଓ ସଦାନନ୍ଦ ଦୁହେଁ ନୀରବ ।) ବୋଉଙ୍କ ଚିକିତ୍ସାପାଇଁ କେତେ ଟଙ୍କା ଦରକାର ?

ଶଶୀ—ଡାକ୍ତର ତ ଆଶଙ୍କା କରୁଚନ୍ତି କ୍ୟାନ୍‌ସର । ଯଦି ପ୍ରକୃତରେ ହେଇଥାଏ, ତେବେ କେତେ ଟଙ୍କା ଯେ ଖର୍ଚ୍ଚ ହେବ—

ମାୟା—କାହିଁ—ଏ କଥା ତ ତମେ କିଛି କହିନ ? ଏସବୁ କଥା ଜାଣିଲାଭଳି ଲୋକ ମୁଁ ନୁହେଁ ନା କ'ଣ ? ମୋ ପାଖରେ ଆଉ ଟଙ୍କା ନ ଥିବ ବୋଲି ବୋଧେ ଏ କଥା ମତେ କୁହାହେଇନି । କ'ଣ କହୁ ନାହାନ୍ତି ସଦାନନ୍ଦବାବୁ ?

ସଦା—ନାହିଁ ନାହିଁ ମା, ତମରି ଟଙ୍କାରେ ତ ଏ ଘର ମୁକୁଳା ହେଲା ।

ମାୟ୍ନା—ମୋ ଟଙ୍କାରେ ଯଦି ଘର ମୁକୁଲା ହୋଇପାରିଲା—ତେବେ ମୋ ଟଙ୍କାରେ ବୋଉଙ୍କ ଚିକିତ୍ସା କରିବାପାଇଁ ବାଧୁଚି କାହିଁକି ?

ଶଶୀ—କିନ୍ତୁ ମାୟ୍ନା, ତୁମ ପାଖରେ କ'ଣ—

ମାୟ୍ନା—ମୋ ପାଖରେ ଟଙ୍କା ଅଛି କି ନାହିଁ ମତେ ପଚାରିଥିଲ ?···କାହିଁକି ଏ ସବୁ କଥା ମୋ ପାଖରୁ ଲୁଚେଇ ଛପେଇ ରଖାହଉଚି ?

ସଦା—ମା' ମୋର ଠିକ୍ କଥା କହୁଛନ୍ତି—ଘରର ଲକ୍ଷ୍ମୀ ସେ !

ମାୟ୍ନା—ଆଜି କେତେ ଟଙ୍କା ହେଲେ ଚଳିବ ସଦାନନ୍ଦବାବୁ ?

ସଦା—ମୋଟେ ଟଙ୍କା ତିନିଶ' ମା । ଅଥଚ ଏମିତି ଦୁର୍ଯୋଗ ଯେ, ହାତରୁ ପଇସା ଖର୍ଚ୍ଚ କରି ସାକ୍ଷୀଗୋପାଳଯାଏ ଯାଇ ବି···

ମାୟ୍ନା—ସାକ୍ଷୀଗୋପାଳ ଯଦି ଗଲେ, ଆଉ ଟିକିଏ ଆଗକୁ ଗଲେ ନାହିଁ କିଟକ ?

ସଦା—କିଟକ ?

ମାୟ୍ନା—ଆମ ଘରକୁ ଯାଇଥିଲେ ତ ଟଙ୍କାର ଅଭାବ ହୋଇ ନ ଥାନ୍ତା ?

ଶଶୀ—(ଆଘାତ ପାଇ) ମାୟ୍ନା !

ମାୟ୍ନା—ତମେ ତ ଜାଣ, ସତ କଥାଟା ମୁହେଁ ମୁହେଁ କହିବାର ବଦ୍ ଅଭ୍ୟାସଟା ମୋର ଗଲେ ବି ମୁଁ ତାକୁ ସହଜରେ ଛାଡ଼ିପାରୁନାହିଁ ।

ସଦା—ତା'ହେଲେ କଣ ମା ମୁଁ କିଟକ ଯିବି ?

ମାୟ୍ନା—ଦରକାର ନାହିଁ—ଟଙ୍କା ମୁଁ ଦେଉଚି ।

(ହାରଟାଏ ଶଶୀର ହାତକୁ ଦେଲା ।)

ଶଶୀ—ଏ କ'ଣ ? ତମ ହାର !

ମାୟ୍ନା—ହଁ, ମୋ ହାର । ପାଁ'ଶ ଟଙ୍କାରୁ କମ୍ ହବନାହିଁ । ଆଜି କାମ ଚଳିଯାଉ—ବାକୀ ପର କଥା ପରେ ହବ ।

ଶଶୀ—ମାୟ୍ନା !!

ମାୟ୍ନା—କ'ଣ ଆଉ କହୁଚ ? ସଦାନନ୍ଦବାବୁଙ୍କୁ ହାରଟା ଦିଅ···ସେ ବଜାରକୁ ଯା'ନ୍ତୁ । ( ନିଜେ ହାରଟା ନେଇ ସଦାନନ୍ଦଙ୍କୁ ଦେଲା । ) ଯା'ନ୍ତୁ ସଦାନନ୍ଦବାବୁ ।

ସଦା—ମୋ କାନରେ ଯେତେବେଳେ ପଡ଼ିଥିଲା—ତମ ଭାଉଜଙ୍କର କ'ଣ ଗୋଟାଏ ଶଙ୍ଖ ହାର ତମକୁ ଖୁବ ଭଲ ଲାଗିଥିଲା ବୋଲି, ତମେ ତମ ଘରେ ପିନ୍ଧିଥିଲ । ହେଲେ ତମ ବାହାବେଳେ ସେ ହାରଟାକୁ ତମ ଭାଉଜ ଆଉ ତମପାଇଁ ମୁକ୍ତି ପାରିଲେ ନାହିଁ । ଅଥଚ ଏଠି ତମେ ତମ ଶାଶୁଙ୍କ ପାଇଁ—

ମାୟା—ସେ ଆଲୋଚନାର ବେଳ ଏ ନୁହେଁ ସଦାନନ୍ଦବାବୁ । ଆପଣ ଯା'ନ୍ତୁ—ଡାକ୍ତରଙ୍କ ଆସିବା ବେଳ ହେଇଗଲାଣି । ଆଜି ସକାଳୁ ପୁଣି ବୋଉଙ୍କ ଦେହ ଟିକିଏ ବେଶୀ ହେଇଚି । ଏଇନେ ଆକୁଳରେ ମତେ ଗୁଡ଼ିଏ ଝୁଲକାଏ ବାନ୍ତି କରିପକାଇଲେ । (ସଦାନନ୍ଦ ଗୁଲିଗଲେ) ଏବେଠୁ ଫଡମତ ଚିକିତ୍ସା ହେଲେ ବୋଉଙ୍କ ଦେହ ଭଲ ହେଇଯିବ ତ ?

ଶଶୀ—ଡାକ୍ତର ତ ସେଇ ଆଶା ଦେଇଚନ୍ତି ।

ମାୟା—ତା'ହେଲେ ତମେ ମୋତେ ହେଳା କରନା । ମୋ ସ୍ୱାର୍ଥ ପାଇଁ ମୁଁ ଏ କଥା କହୁଚି । କାହିଁକି ଜାଣ ? ସମସ୍ତେ କହୁଚନ୍ତି—ବୋହୂ ଭଲ, ହେଲେ ଉଦ୍ଦଣ୍ଡୀ । ଆଉ ମୁଁ ସତ କହୁଚି—ବୋଉ ଯଦି ଆଉ ପାଞ୍ଚ ଦଶ ବର୍ଷ ନ ବଞ୍ଚନ୍ତି, ତା'ହେଲେ ମୋର ଏ ଉଦ୍ଦଣ୍ଡପଣିଆ ଭାଙ୍ଗି ବନାଇଁ ।

ଶଶୀ—କିନ୍ତୁ ମାୟା !

ମାୟା— ଏଁ ···

ଶଶୀ—ଏ ତୁମେ କ'ଣ କଲ ମାୟା ? ହାରଟା ତମେ ବିକିବାକୁ ଦେଲ କାହିଁକି ?

ମାୟା—ପୁଣି ସେଇ କଥା କହୁଚ ?

ଶଶୀ—ନା ମାୟା—ଏ ଅନ୍ୟାୟ । ଆଉ ଗୋଟାଏ ହାର ଗଢ଼ିଦବାର ଶକ୍ତି ଯେତେବେଳେ ମୋର ନାହିଁ—

ମାୟା—କି ଆଶ୍ଚର୍ଯ୍ୟ କଥା ତମେ କହୁଚ ? ହାରଟାଏ ଗଢ଼ି ଦବାର ଶକ୍ତି ତମର ଥିଲେ ଟଙ୍କାର ଅଭାବପାଇଁ ଆଉ ଗୋଟାଏ ହାର ବିକା ହୁଅନ୍ତା କାହିଁକି ?

ଶଶୀ—ନା ମାମ୍ବା, ଏ କେବଳ ତମର ମନରଖା ଯୁକ୍ତି । ତମର ପିନ୍ଧା ହାରଟା ମୁଁ ବିକିଦେଲି !!

ମାମ୍ବା—ମୋ ହାର—ମୋ ଟଙ୍କା—ଏସବୁ କଥା ତମ ମନରେ ଆଉ କେଇ-ଦିନ ଜାଗି ରହିବ କହିଲ ? ଆଜି ତମର ରୋଜଗାର କମ୍ । କିନ୍ତୁ ମୁଁ ଜାଣେ ରୋଜଗାର କରିବାର ଶକ୍ତି ତମର ଅଛି । ଦିନେ ତମେ ବଡ଼ ହବ—ଖୁବ୍ ବେଶୀ ରୋଜଗାର କରିବ ।···ଆଚ୍ଛା ସେ ଦିନ କ'ଣ ତମ ଟଙ୍କା ବାକ୍ସର ଚାବିଟା କେବଳ ତମର ପାଖରେ ରହିବ ? ସେଥିରେ ମୋର କିଛି ଦାବୀ—କିଛି ଅଧିକାର ରହିବ ନାହିଁ ?

ଶଶୀ—ମାମ୍ବା !

ମାମ୍ବା—ନାହିଁରେ ବାବା ! ଓକିଲ ମଣିଷ, ଏଇନେ ଏଇ କଥାରୁ କ'ଣ ନାହିଁ କ'ଣ ଜେରା କରି ବସିବ—ମୁଁ ଆଉ କିଛି କହୁନି । (ଭିତରୁ ରବି ଆସିଲା ।)

ରବି—ନୂଆବୋଉ, ବୋଉ ଡାକୁଚି ।

ମାମ୍ବା—ଯାଉଚି । (ଚାଲିଗଲା)

ଶଶୀ—ବୋଉ କ'ଣ ଶୋଇଚି ରବି ?

ରବି—କୋଉଠି ଶୋଉଚି ? ସବୁବେଳେ ଖାଲି ନୂଆବୋଉଙ୍କୁ ଖୋଜୁଚି । ଏ ବେମାରି ପଡ଼ିଲା ଦିନୁ ନୂଆବୋଉ ପାଖରେ ଥିଲେ ବୋଉର ଭଲ । କାଲି ତମେ କଟେକ୍ ଗଲ—ନୂଆବୋଉ ସାରା ଦିନ ବୋଉ ପାଖରେ ବସିରହିଚି ।

ଶଶୀ—ସେଇକଥା ମୁଁ ଭାବୁଚିରେ ରବି, ବାହାଘର ପରେ ପରେ ବୋଉ ଯେମିତି ସବୁ କଥାରେ ମାମ୍ବା ଉପରେ ବିରକ୍ତ ହୋଇ ତାକୁ ପାଖରେ ପୂରେଇ ଦଉ ନ ଥିଲା—ବର୍ତ୍ତମାନ ବୋଉର ସେଇ ଢଙ୍ଗ ଥିଲେ କି ଅବସ୍ଥା ହେଇଥାନ୍ତା କହିଲୁ ? କିଏ ତା'ର ସେବା କରିଥାନ୍ତା ?

ରବି—ହେଲେ ନୂଆବୋଉ ଏତେ କାମକୁ ପାରିବା ସହଜ ନୁହେଁ ଭାଇ । ମୁଁ ପରା କାଲି ଦେଖିଚି, ନୂଆବୋଉ ଖାଇ ବସିଲାବେଳେ କାନ୍ଦି ପକେଇଲେ ।

ଶଶୀ—କାହିଁକି ?

ରବି—ବୋଉ କଥା ଶୁଣି ଖାଇବାକୁ ଆସୁ ଆସୁ ଦିନ ଢଳି ଗଲାଣି । ସେତେବେଳକୁ ଭାତ ଶୁଖି ଶୁଖିଲା ହୋଇଗଲାଣି । ଭାତ ଗଣ୍ଡାକ ପାଟିକି ନେଲାକ୍ଷଣି ଝର ଝର ହୋଇ କାନ୍ଦପକେଇଲେ ।

ଶଶୀ—ସେଇଠୁ ?

ରବି—ମୁଁ ପଚାରିଲାରୁ ରାଗିଉଠି ମତେ କହିଲେ—ଆମ ଘରେ କୁକୁର ଯାହା ଖାଉ ନ ଥିଲା, ସେଇଆ ଏଠି ମୁଁ ଖାଉଛି—ମୋ ପେଟକୁ ଏ ଭାତ ଯାଉନି ।

ଶଶୀ—ମାଷ୍ଟ୍ରା କହିଲା ଏ କଥା ?

ରବି—କହିଲେ ସିନା, ସାଙ୍ଗେ ସାଙ୍ଗେ ଉଠିଆସି ମତେ ଟାଣିନେଇ ପାଖରେ ବସେଇଲେ—ଆଉ ଲୁହ ପୋଛିଦେଇ ହସ ହସ ମୁହଁରେ ସବୁଯାକ ଭାତ ଖାଇଲେ ।

ଶଶୀ—ହୁଁ, ତା' ଭାଗ୍ୟ !

ମୋହନ—(ବାହାରୁ) ରବି ।

ଶଶୀ—ଦେଖିଲୁ ରବି—କିଏ ଡାକୁଚି । (ରବି ଯାଇ ସଙ୍ଗେ ସଙ୍ଗେ ଫେରିଆସିଲା ।)

ରବି—ମୋହନ ଭାଇ । (ମୋହନ ଆସିଲା ।)

ଶଶୀ—(ପ୍ରଣାମ କରି) ମୋହନ ଭାଇ—ତୁମେ ହଠାତ୍ ?

ମୋହନ—ହଠାତ୍ ଆସିବାକୁ ବାଧ୍ୟ ହେଲି ଶଶୀବାବୁ । ବାପାଙ୍କ ଦେହ ଭଲ ନାହିଁ ।

ଶଶୀ—କାହିଁ, ଆମେ ତ କେହି କିଛି ଜାଣୁନା ! କଣ ହେଇଚି ତାଙ୍କର ?

ମୋହନ—ଦେହ ତ ଯାହା ହେଇଚି ହେଇଚି । ସେ ସବୁବେଳେ ମାଷ୍ଟ୍ରାକୁ ଖୋଜୁଚନ୍ତି । କହୁଚନ୍ତି—ମାଷ୍ଟ୍ରାକୁ ନଦେଖିଲେ ମୁଁ ବଞ୍ଚିପାରିବି ନାହିଁ । ମାଷ୍ଟ୍ରା କାହିଁ ?

ଶଶୀ—ମାଷ୍ଟ୍ରା···

ମୋହନ—ମୁଁ ଜାଣେ ଶଶୀବାବୁ, ତୁମେ ଅସୁବିଧାରେ ପଡ଼ିବ । କିନ୍ତୁ କ'ଣ କରିବ ଭାଇ ? ଦିନ ଦି'ଘଣ୍ଟା ପରେ ମାୟା ପୁଣି ଫେରିଆସିବ । ବାପାଙ୍କ ଦେହ ଏମିତି, ବୋଉ ଏକାବେଳକେ ଅସ୍ଥିର ହୋଇପଡ଼ୁଚି । କ'ଣ କହୁଚ ?

ଶଶୀ—କ'ଣ ଆଉ କହିବି ମୋହନ ଭାଇ ! ବାପାଙ୍କ ଦେହ ଯେତେବେଳେ ଏମିତି—ଆପଣ ପୁଣି ଆସିଚନ୍ତି—ଏ ମୋର...

ମୋହନ—ମାୟା କାହିଁ ?

ଶଶୀ—ବୋଉ ପାଖରେ । ଆପଣ ଜାଣନ୍ତି ନାହିଁ—ବୋଉକୁ କାନ୍‌ସର୍ ହୋଇଚି ବୋଲି ଆଶଙ୍କା କରାଯାଉଚି ।

ମୋହନ—କାନ୍‌ସର୍ !

ଶଶୀ—ହଁ, ଡାକ୍ତର ତ ସେଇଆ କହିଲେ । ଆଜି ସକାଳୁ ପୁଣି ରୋଗଟା ବେଶି ବଢ଼ିଯାଇଚି । ବୋଉ ମାୟାକୁ ମୁହୂର୍ତ୍ତେ ପାଖରୁ ଛାଡ଼ୁନାହିଁ । (ମୋହନ ଭିତରକୁ ଗଲା ) ·

ରବି—ନୂଆବୋଉ ତା'ହେଲେ ଯିବେ ଭାଇ ?

ଶଶୀ—ନା' ବାପାଙ୍କ ଦେହ ଯେତେବେଳେ ଏମିତି—ନିଜେ ମୋହନ ଭାଇ ପୁଣି ଆସିଚନ୍ତି—ନ ଯିବ ବା କେମିତି ?

ରବି—ହେଲେ ବୋଉ କଥା କ'ଣ ହେବ ଭାଇ ? ନୂଆବୋଉଙ୍କୁ ତ ସେ ମୋଟେ ପାଖରୁ ଛାଡ଼ିବନାହିଁ ।

ଶଶୀ—କହୁଚନ୍ତି—ଦିନ କେଇଟା ପରେ ପଠେଇଦେବେ । ଏଇ ଦିନ କେଇଟା କ'ଣ ଆମେ ବୋଉକୁ ଚଳେଇ ନବାନାହିଁ ରବି ?

ରବି—ଚଳେଇ ନେବାନାହିଁ କାହିଁକି ? ହେଲେ ନୂଆବୋଉ ଯିବା କଥା ଶୁଣିଲେ ବୋଉର ଦେହ ଦି'ଗୁଣ ବଢ଼ିଯିବ ।

ଶଶୀ—କ'ଣ କରିବା କହ ! ଉପାୟ ତ ଆଉ କିଛି ନାହିଁ ।

( ଭିତରୁ ମାୟା ଓ ମୋହନ ଆସିଲେ । ମାୟା କାନ୍ଦୁଥାଏ । )

ମାୟା—ଶୁଣୁଚ, ବାପା କହୁଚନ୍ତି ମତେ ନ ଦେଖିଲେ ସେ ବଞ୍ଚିବେ ନାହିଁ । ଭାଉଜ କଟକରେ ନାହାନ୍ତି—ବାରିପଦାରେ । ଏ ଅବସ୍ଥାରେ ବୋଉର ହାତଗୋଡ଼ ଚଳୁନଥିବ । ମୁଁ କଣ କରିବି କହିଲ ?

ଶଶୀ—ମୁଁ ଆଉ କଣ କହିବ ମାୟା ? ମୋହନ ଭାଇ ଯେତେବେଳେ ନିଜେ ଆସିଚନ୍ତି···( ରବି ଭିତରକୁ ଗ୍ଲଲଗଲା । )

ମୋହନ—ହଁ ଶଶୀବାବୁ, ଦିନ କେଇଟା ପାଇଁ ମାୟାକୁ ପଠେଇ ଦିଅ । ମାଉସୀଙ୍କୁ ତ ଏ କଥା ମୁଁ ମୁହଁ ଖୋଲି କହିପାରିଲି ନାହିଁ—ହେଲେ ତାଙ୍କ ଅବସ୍ଥା ଯେତେବେଳେ ମୁଁ ନିଜ ଆଖିରେ ଦେଖିଯାଉଚି ଦିନ କେତେଟା ଭିତରେ ମୁଁ ମାୟାକୁ ପଠେଇଦେବ ।

ଶଶୀ—ଆଜି ଯିବ ?

ମାୟା—ହଁ ଆଜି । ଶୁଣିଲ ପରା—ବୋଉ କ'ଣ ଖବର ଦେଇଚି—ବାପା କହୁଚନ୍ତି—ମତେ ନ ଦେଖିଲେ ସେ ବଞ୍ଚିବେ ନାହିଁ ।

ଶଶୀ—ବେଶ୍—ବର୍ତ୍ତମାନ ତ ବସ୍ ମିଳିପାରିବ, ମୁଁ ଯାଏଁ—ବସ୍ ଟିକେଟ୍ କରିଦେଇ, ଡାକ୍ତରଙ୍କୁ ଡାକିଆଣିବ ।

ମାୟା—ହଁ, ଯାଅ ।

ଶଶୀ—ହଁ, ମୁଁ ଯାଉଚି ମାୟା । ତମେ ବ୍ୟସ୍ତ ହୁଅ ନାହିଁ । ସବୁ ଠିକ୍ ହୋଇଯିବ । ତମେ ଯାଅ—ଲୁଗାପଟା ପିନ୍ଧ ।

ମୋହନ—ଗ୍ଲଲ ମାୟା, ଭିତରକୁ ଗ୍ଲଲ ।

ଶଶୀ—ଭାଇଙ୍କୁ ନେଇ ତମେ ଭିତରକୁ ଯାଅ ମାୟା—ମୁଁ ଆସୁଚି । ( ଯିବାକୁ ଉଦ୍ୟତ ହେଲାବେଳେ ଶଶୀବୋଉ ଆସିଲେ । ପଛେ ପଛେ ରବି । )

ଶଶୀ—ଏ କ'ଣ ବୋଉ ତୁ ଉଠି ଆସିଲୁ କାହିଁକି ?

ମୋହନ—ମାଉସୀ !

ଶଶୀବୋଉ—ବୋହୂ କୁଆଡ଼େ କଟକ ଯାଉଚି ? ମତେ ଲୁଚେଇ ତାକୁ କଟକ ପଠେଇ ଦଉଚ ?

ଶଶୀ—ତୋ ସମୁଦିଙ୍କ ଦେହ ଭାରି ଖରାପ । ସବୁବେଳେ ମାୟାକୁ ଖୋଜୁଚନ୍ତି । ମୋହନଭାଇ ଆସିଚନ୍ତି···ଦିନ କେଇଟାପାଇଁ ତାକୁ ନେଇଯିବାକୁ । କ'ଣ କହୁଚୁ କହିଲୁ ?

ମୋହନ—ହଁ ମାଉସୀ, ମୁଁ ଜବାବ ଦଉଚି—ଦିନ ଦି'ତିନିଟା ପରେ ମୁଁ ନିଜେ ଆଣି ମାୟାକୁ ଛାଡ଼ି ଦେଇ ଯିବ ।

ଶଶୀବୋଉ—ଭଲକଥା—ତା' ବାପ ଯେତେବେଳେ ତାକୁ ଖୋଜନ୍ତି—ଖାଇ ଆସିଛ ନବାକୁ—ଯାଉ । ଯିବୁ ମା ? ମତେ ଛାଡ଼ି କଟକ ଯିବୁ ? ( କଣ୍ଠରେ ଶିଶୁସୁଲଭ ଆକୁଳତା )

ମାୟା—ମୁଁ ତମକୁ ଛାଡ଼ି ଯାଇ ନ ଥାନ୍ତି ବୋଉ ! ବାପା କହୁଚନ୍ତି—ମତେ ନ ଦେଖିଲେ ବଞ୍ଚିବେ ନାହିଁ । ଭାଉଜ ପୁଣି ଏଇନେ କଟକରେ ନାହାନ୍ତି—ବାପଘରକୁ ଯାଇଚନ୍ତି ।

ଶଶୀବୋଉ—ମୁଁ ତତେ ଅଟକଉ ନାହିଁ ଲେ ମା ! ଶାଶୁ-ଶ୍ୱଶୁରଙ୍କ ପାଇଁ ବାପଘରର ମାୟା ଏତେ ଦିନରେ କଏ କାଟିଲଣି ନା ତୁ କାଟିବୁ ? ତୋ' ଭାଉଜ ତ ପୁଣି ତା' ବାପଘରକୁ ଚାଲିଗଲା—ତା' ଶ୍ୱଶୁର ମୁହଁକୁ ଅନେଇଲା ନାହିଁ । ତୁ ଯା' ମା—ଯା । ( ଯନ୍ତ୍ରଣାରେ ଛଟପଟ ହୋଇ ଲୁହଭରା ଆଖିରେ ) ମାସ କେଇଟା ବୋହୂପଣିଆ କରିଲୁ, କେତେ ଗାଳିମନ୍ଦ ତତେ ଦେଇଚି । ହେଲେ ତୋ' ବୋଉକୁ କହିବୁ ମା— କୋଉ ଜନ୍ମରେ ପୁଣ୍ୟ କରିଥିଲି ବୋଲି ତୋ' ଭଳି ବୋହୂ ମୋ ଭାଗ୍ୟରେ ଥିଲା । ତୁ ଯା' ମା—ଯା !

ଶଶୀ—ମାୟା, ବୋଉକୁ ନେଇ ତମେ ଭିତରକୁ ଯାଅ—ମୁଁ ଏଣେ ଯାଉଚି ।

ମାୟା—ଏଁ ! ( ମାୟା ମନରେ ଦ୍ୱନ୍ଦ୍ୱ )

ଶଶୀ—ମୁଁ ଯାଉଚି, ଡାକ୍ତର ଡାକ ବସ୍ ଟିକେଟ୍ ନେଇ ଆସିବ ।

ମାୟା—( ସ୍ଥିର ଦୃଷ୍ଟିରେ ଶୂନ୍ୟକୁ ଚାହିଁ ) ହଁ—ଯାଅ ।

ମୋହନ—ଆଉ ଭାବୁଚୁ କ'ଣ ?

ମାୟା—ନା…( ଶଶୀକୁ ) ଏଇ…ଶୁଣୁଚ !

ଶଶୀ—କ'ଣ ?

ମାୟା—ନା, କିଛି ନାହିଁ…( ଦୃଷ୍ଟି ପୁଣି ଶୂନ୍ୟରେ ନିବଦ୍ଧ )

ମୋହନ—କ'ଣ ଆଉ ଭାବୁଚୁ ମାୟା ? ତୁ ତ ଦି'ଦିନ ପରେ ଫେରି ଆସିବୁ । ଶଶୀବାବୁ ଅଛନ୍ତି, ରବି ଅଛି—ମାଉସୀକୁ ସେମାନେ ଚଳେଇ ନେବେ ନାହିଁ ?

ଶଶୀ—ହଁ ମାୟା, ମୁଁ ଅଛି—ବୋଉର କିଛି ଅସୁବିଧା ହବ ନାହିଁ ।

ଶଶୀବୋଉ—ଯା’ ମା—ଲୁଗାପଟା ପିନ୍ଧ୍ । ···ଆଉରେ ରବ···
ଶଶୀ—ଡେରହେଇଯାଉଚ ମାୟା—ଯାଅ ଲୁଗାପଟା ପିନ୍ଧ ।
ମାୟା—ନା—ମୁଁ ଯାଇପାରିବିନାହିଁ । ( କାନ୍ଦୁଥାଏ )
ମୋହନ—ମାୟା !
ମାୟା—ଏ ଘରର ବୋହୂ, ମୁଁ—ସେ ପାଖରେ ମୋ ବାପା—ଏଠି ମୋ ରୋଗୀଣା ଶାଶୂ । କାହାକୁ ପରକରି, କାହାକୁ ନିଜର କରିବି ବୋଲି କହୁଚ ତୁମେ ?
ଶଶୀବୋଉ—ମାୟା ! ମା ମୋର !
ଶଶୀ—ମାୟା !
ମୋହନ—ମାୟା, ବାପା ଯେ ତେଣେ···
ମାୟା—ତୁମେ ଯାଅ ଭାଇ—ବାପାଙ୍କୁ କହିଦବ—ମୁଁ ଯାଇପାରିବି ନାହିଁ । ଭଉଜ ସିନା ତାଙ୍କ ଶଶୁରଙ୍କୁ ଛାଡ଼ି ଚାଲିଗଲେ—ହେଲେ ମୋ ରୋଗୀଣା ଶାଶୁଙ୍କୁ ଛାଡ଼ି ମୁଁ ଯାଇପାରିବି ନାହିଁ । ତାଙ୍କ ସେବା କରିବାରେ ମୋର ସୁଖ—ମୋର ଶାନ୍ତି । ବାପା ଏ କଥା ଶୁଣିଲେ ମତେ ମୋଟେ ଖୋଜିବେ ନାହିଁ—ତୁମେ ଯାଅ ଭାଇ ବାପାଙ୍କୁ ଏ କଥା କହିଦିଅ—ଯାଅ । ( ଶାଶୁଙ୍କ କୋଳରେ ମୁହଁ ରଖି କାନ୍ଦୁଥାଏ । )

---